ଶରତ ନିରୁକୁ ହଲାଇ ଦେଇ କହିଲା—ତୋ ଛବି ଅଙ୍କା ସରିଲା ନିରୁ ? ଦେଖିଲୁ ମୁଁ କେମିତି ସାଙ୍ଗେ ସାଙ୍ଗେ କେଡ଼େ ସୁନ୍ଦର ଛବି କରିଦେଲି ।

ନିରୁ ରଙ୍ଗ ପେନ୍‌ସିଲ୍‌ଟା ଫୋପାଡ଼ି ଦେଇ କହିଲା—ଦେଖିବ ଏଇଷିଶା ଶରତ ଭାଇ, ସବୁ କେମିତି ଠିକ୍ ଠିକ୍ କରି ଚିରି ଫୋପାଡ଼ି ଦେବି ! ତୁମେ ଠେଲି ଦେଲ—ଦେଖିଲ, ମୋ ଛବି ଉପରେ କେମିତି ପେନ୍‌ସିଲ୍ ଗାରଟା ଟାଣି ହୋଇଗଲା ।

ଶରତ ହସି ହସି କହିଲା— ଯେଉଁ ଛକିତ, ମାଙ୍କଡ଼ ପରି ହୋଇଛି, ମୋ ପରି ଛବି କରି ପାରିବୁ ?

ନିରୁ ଆଖିରେ ଲୁହ ଢଳ ଢଳ ହୋଇ ଆସିଲା, ଛୋଟ ନାଲି ଓଠଟି ଥରାଇ କହିଲା—ମୋ ଛବି ଭଲ ନ ହେଲା ନାହିଁ, ତୁମକୁ କିଏ କହୁଛି ?

ଶରତ ଦେଖିଲା ଏଥର ନିରୁ ରାଗି ଗଲାଣି, ସେଇଠୁ ତାକୁ କୋଳ ଉପରକୁ ଅଜଡେଇ ପକାଇ ଲୁଗା କାନିରେ ଲୁହ ପୋଛି

ଦେଇ ଗେଲ କରି କହିଲା—ଏଡ଼େ ଢିଅଟା ହୋଇ କାନ୍ଦୁଛୁ ନିରୁ, ତୋତେ ଲଜ ମାଡୁନାହିଁ ।

ଏଇ ଟିକିକ ଆଦରରେ ନିରୁ ମନ କୁଆଡ଼େ ବଦଳି ଗଲା । ପିନ୍ଧାଲୁଗା ତଳେ ମୁହଁ ଲୁଚାଇ ଭାରି ଅଭିମାନରେ କହିଲା—ନିଜେ ଭାରି ଭଲତ, ସାନ ପିଲାଟିଏ ନା, ମୋ ଛବିରେ କିଏ ଗାର ପକାଇଲା !

ମୁଁ ଜାଣେ ନା ।

ଭାରି ସତ କଥା ଏକା । ନ ଜାଣିଲେ ନାହିଁ, ମଟଭ ଛାଡ଼, ମୁଁ ଯାଏଁ ।

ନିରୁ ଯେମିତି ତା କୋଳରୁ ଉଠିଛି, ସେମିତି ଜୋରରେ ଶରତକୁ ଠେଲି ଦେଇ ପଳାଇ ଯାଉଁ ଯାଉଁ କହିଲା—ଭଲ ହେଇଛି, ମୋ ମନକୁ ବେଶ୍ ପାଇଛି, ମୋ ଛବିରେ କାହିଁକି ଗାର ଟାଣିଲ ?

ଶରତ ଲୁଗା କାନିଟିକୁ ଟାଣି ଧରି ହସି ହସି କହିଲା—ଯାଉଛୁ କେଉଁଠିକି, ମୋ ଛବି ଦେଖି ଯା ।

ମୋ ଲୁଗା ଛାଡ଼, ମୁଁ ଯିବି ।

ନାହିଁ ତୁ ଆଗେ ଆ ।

ନିରୁ ହସି ହସି ଶରତ ପାଖରେ ବସିଲା । ଶରତ ତା ହାତକୁ ଧରି କହିଲା—ମୋତେତ ଠେଲିଲୁ କାହିଁକି ? ଆଉ ଠେଲିବୁ ?

ନା'

ଆଉ ରାଗିବୁ ?

ନା'

ମୋ ଛବି ଦେଖିଯା ?

ଇସ୍, ଯେଉଁ ଛବି ହେଇଥିବତ, ମାଙ୍କଡ଼ ପରି, ମୁଁ ଦେଖିବି ନାହିଁ ।

କଣ କହୁଛୁ, ଦେଖିବୁ ନା ?

ହଁ ହଁ ଶରତ ଭାଇ ।

ଆଗେ ଆଖି ବୁଜ ।

ବୁଜିଲି ।

ଶରତ ଛବି ଖଣ୍ଡିକ ତା ମୁହଁ ପାଖରେ ଧରି କହିଲା—ଏଥର ଖୋଲ ।

ନିରୁ ଆଖି ଖୋଲିଦେଇ କହିଲା—ଠିକ ଠିକ କରି ଦେବ ଜାଣିଥା । ତୁମେ ଭାରି ଦୁଷ୍ଟ ଶରତ ଭାଇ, ତୁମେ କାଲି ମୋତେ ଟାଣି କୋଡ଼ରେ ବସାଇଲ, ରାଣ ପକାଇ କହିଲ ଗେଲ କରିଦେ । ମୁଁ ଗେଲ କରିଦେଲି ବୋଲି କଣ ମୋର ଦୋଷ ହେଲା ? ତୁମେ ସେଇ ଛବି ଅଙ୍କିଛନା ! ବୋଉ ଦେଖିଲେ କଣ କହିବ ! ମୋ ରାଣ ଶରତ ଭାଇ, ଛିଣ୍ଡାଇ ପକା ।

ମୁଁ ଅଉ ଗେଲ ଛଡ଼ା କଣ କହୁଛୁ କି ? ନା ଜମାରୁ ଛିଣ୍ଡାଇବି ନାହିଁ, ଭାରି ସୁନ୍ଦର ଛବି । ଛୁଟି ପୂରିଲେ କଟକ ଯିବି । ଡ଼ାକ୍ତର-ଖାନାରେ ମୋର କେତେ ସାଙ୍ଗଙ୍କୁ ଦେଖାଇବି ।

ନିରୁ, ଶରତ ସାଙ୍ଗରେ ଛଡ଼ା ମଡ଼ା କରି, ନା ଶରତ ଭାଇ, ମୋ ରାଣ, ଛିଣ୍ଡାଇ ପକାଇବ । କାହାକୁ ଦେଖାଇବ ନାହିଁ ।

ଶରତ ନିରୁର ନାଲି ଟୁଲୁ ଟୁଲୁ ଗାଲ ଦୁଇଟିକୁ ଟିପିଦେଇ କହିଲା—ଇସ୍, ଯେଉଁ ସୁନ୍ଦରତ, କିଏ ଦେଖିବାକୁ ଆସୁଚି କି ।

ନ ହେଲେ ନାହିଁ, ତୁମକୁ ଯିଏ ସୁନ୍ଦର ଦେଖା ଯାଉଛି ତା ପାଖକୁ ଛବି ଅଙ୍କି ଯାଉନା, ମୁଁ ଯାଉଛି ଶୋଇବି ।

ଶରତ ତାକୁ ଟାଣି ଆଣି କହିଲା—ନା'ଲେ—ନିରୁ, ମିଛରେ ସେମିତି କହିଲି ନା । ତୁ ଭାରି ସୁନ୍ଦର ।

ମୋତେ ଭୁଲାଉଛ ନା, ତୁମେତ ସତ କହୁଛ । ମୁଁ ଜାଣିଛି ଯେ—

ଶରତ ତାକୁ ଅସ୍ତବ୍ୟସ୍ତ କରି ପକାଇ କହିଲା—କଣ ଜାଣିଛୁ କହ, ନଇଲେ……

କିଛି ଜାଣିନି, ମୋତେ ଛାଡ଼, ଉଁ ।

ଶରତ କହିଲା—ମୁଁ ତୋତେ ଆଉ ପାରିବିନି । ଛବିଟା ମୋ ସୁଟ୍‌କେଶରେ ଥୋଇ ଘରୁ ଆସେ, ତୁ ଛବି କରୁଥା, ଶରତ ଉଠି ଚାଲିଗଲା । ନିରୁ ଲୁଗାପଟା ସଜାଡ଼ି, ଦାଣ୍ଡ ଖୁଣ୍ଟକୁ ଧରି ହସି ହସି କହିଲା—ସବୁ ଜାଣେ ଯେ, ସବୁ ଜାଣେ, କହିବି ନାହିଁ ଜମାରୁ ।

ଶରତ ପଛକୁ ଅନାଇଁ ହସି ହସି କହିଲା—ହଉ ହଉ, ମୁଁ ଠିକାଏ ଘରୁ ଆସେ । ତୋ ମଜାଟା ଛଡ଼ାଇ ଦେବି ଯେ ।

ନିରୁ ତାଳିମାରି ହସିଲା ।

"ତରୁଣ ଯୌବନ ଆସିବାକୁ ଆଉରି କେତେ ବାକି, ତଥାପି ଜୀବନରେ କେତେ ଗୁପ୍ତ ରହସ୍ୟ ଆରମ୍ଭ ହୁଏ ଏଇଠୁ ।"

   

ନିଟ୍ଠ ଖରା । ଚାରିଆଡ଼ ଶୁନ୍‌ଶାନ୍ । କୁଆ କୋଇଲିର ବି ସାବ ନାହିଁ । ତଳ ଘରୁ ଚୋଉ କରି ଲେଉଁଠାଉ ଲେଉଁଠାଉ ଡାକିଲେ, ନିରୁ, ନିରୁ !

ଦାଣ୍ଡ ମେଲରୁ ହାତରେ ପେନ୍‌ସିଲଟା ଧରି ମା ପାଖରେ ବସି ପଡ଼ି ନିରୁ କହିଲା—କାହିଁକି ଡାକିଲୁ ବୋଉ ।

"ତୋତେ ମୁଁ ଆଉ ପାରିବି ନାହିଁ । ପିଲା ସିନା କୁହାର ବୋଲର ହୁଅନ୍ତି, ସାଇପାଖ କଣ କିଏ ନାହାନ୍ତି, ତୋ ପରି କିଏ ଅମାନିଆ ହେଉଛନ୍ତି ! ଏଡ଼େ ବଡ଼ ଖରା, ସାପ କି ଗାତ ରୁ ବାହାରୁ ନାହିଁ ।

କୁଆ କୋଇଲି ବି ଡ଼ାଳପତ୍ରରେ ଘାଇରେ ଧାଲେଇ ପଞ୍ଚଛନ୍ତି । ତୋ ଆଖିକୁ ଟିକିଏ ଶୁଝା ନିଦ ଆସୁ ନାହିଁ ଲୋ ! ସାଇଯାକ ବୁଲିଆସି ଦେଖିଲୁ, ତୋ ପରି କେଉଁ ଝିଅଟା ଖରାବେଳଯାକ ଇମିତ ବାହ୍ମ ମେଲାଇ ବସିଛି । ଏତୁଟିଏ ଅସି ହେଲୁଣି, ଆଉ କେଉଁଦିନେ ବୁଦ୍ଧି ହେବ ଶୁଣେ ।”

ନାନୁର ମୁହଁଟି ଶୁଖିଗଲା । ଆଖିରେ ଲୁହ ଟଳ ଟଳ ହେଲା କହିଲା—ନାହିଁ ବୋଉ, ମୁଁ ତ ଖରାରେ କୁଆଡ଼େ ବୁଲିନି । ଦାଣ୍ଡ ପିଣ୍ଡାରେ ବସି ଗୋଟାଏ ଗୀତ କରୁଥିଲି ପରା ! ଶରତ ଭାଇ ତ ମୋ ପାଖରେ ବସିଥିଲା, ଏଇକ୍ଷଣି ତାଙ୍କ ଘରକୁ ଯାଇଛି ।

ନାନୁର କାନ୍ଦ କାନ୍ଦ ମୁହଁ ଦେଖି ମା' କୋଡ଼କୁ ଆଉଜେଇ ପକାଇ ଲୁଗାକାନିରେ ଲୁହ ପୋଛି ଦେଇ କହିଲେ—ଏଇ କଥାରେ ଆଖିରୁ ଲୁହ ଗଡ଼ି ପଡୁଛି ନା । ଶାଶୁଘରେ ଯାଇ କାହା କଥା କେମିତି ସହିବୁ ଲୋ ! ମା'ଟା, ତୋରି ଭଲପାଇଁ ମୁଁ କହୁଛି ପରା ! ଦେଖିଲୁ, ମୁହଁ କେମିତି ଶୁଖି ରଙ୍ଗା ପଡ଼ି ଗଲାଣି ।

ନାହିଁ ବୋଉ, କାଲିଠୁ ଆଉ ଛବି କରିବିନି । ଶରତଭାଇଟା ଭାରି ଦୁଷ୍ଟ । ଖରାବେଳେ ଆସି ଖାଲି କହୁଛି ଛବି ଆଙ୍କିବା, ଛବି ଆଙ୍କିବା ! ଆଜି ଆସିଲେ ମୁଁ ବି ଜମାରୁ ପାଖି ପଶାଇବି ନାହିଁ ।

ମା ହସି ହସି କହିଲେ—ଛି ମା' ସେ ତୋର ଭାଇ ପରା ! ତୋର ଲାଗି ଦିନ ରାତି ଦଉଡ଼ି ଆସୁଛି । ତା' ମାଆ ବାପ ଯଦି ଥାନ୍ତେ ସେ କାହିଁକି ଆସନ୍ତା ! ଏତେ ସମ୍ପତ୍ତି ଥିଲେ କଣ ହେବ, ଯେତେ-ହେଲେ ଦାଦି ଖୁଡ଼ୀ । ଗାଁ ଗୋଟାକରେ ପିଲି ଖଣ୍ଡେ । କଟକ ସ୍କୁଲରେ ଯାଇ ପଢିଲାଣି, ତଥାପି ଗାଁରେ କାହାକୁ ଚିହ୍ନେ ନାହିଁ । ଭଗବାନ ତାକୁ ଆଇଷ ଦେଇଥାନ୍ତୁ ଲୋ ! ନାନୁ, ମୁଣ୍ଡଟା ଟିକିଏ ଚିପିଦେଲୁ ମା, ପୋଡ଼ା ମୁଣ୍ଡଟା କାହିଁକି ଧକ୍ ଧକ୍ ହେଉଛି ।

—ନିରୁ ମୁଣ୍ଡ ଶପି ଦେଉଥାଏ ।

ଠିକ୍‌ଏ ଗଲା । ମା' କହୁଲେ ଯା' ଝିଅ, ଦିନ ଆସି ଗଲଣି, ପଖାଳ ଗଣ୍ଡିଏ ବାଢି ଖାଇଦେ । ଘର ଦୁଆର ଓଳାଇ ପକା । ପିଣ୍ଡା ଠଣାରୁ ଦୀପଟା ଆଣି ସଞ୍ଜବତୀ ଦ'ଟା ବଳି ଦେ । ମୁଁ ଯାଉଛି ବାହାରୁ ସାରୁ ଦ'ବୁଦା ଖୋଳି ଆଣେ । ବେଳାବେଳି ଗଣ୍ଡାଏ ଭାତ ବସାଇ ଦେଲେ କାମ ସରିଯିବ । ବାପା ତୋର ଦଉଡ଼ି ଦଉଡ଼ି ଏଇକ୍ଷଣି ଆସୁଥିବେ ।

—ନିରୁ କହିଲା—ହଉ ବୋଉ ଯାଉଛି ।

ହାତ ଗୋଡ଼ ଧୋଇ ନିରୁ ହାଣ୍ଡିଶାଳକୁ ଦଉଡ଼ିଗଲା । ଅଧ ବେଲଟରେ ଭାତ ଗଣ୍ଡିଏ ବାଢି, ତରକାରି ହାଣ୍ଡି ଦେଖି ଡାକିଲା— କଣ ଦେଇକି ଖାଇବି ବୋଉ, ତୁଣ ଯମାରୁ ରଖିନୁ ? ମୁଁ ଯମାରୁ ଖାଇବି ନାହିଁ ଯା—

—ମା' ବଛଣାରୁ ଉଠିପଡ଼ି କହିଲେ, ପୁଣି ଝିଅଟି ପରି ! ଏତେ ଅଳିଅଟ ଧଇଲେ ମୁଁ କଣ କରିବି କହିଲୁ ? ଏତେ ଠିକେ ବୋଲି ତୁଣି, ସେଥିରୁ କେତେ ରଖନ୍ତି ! ଲୁଣ ଲଙ୍କାଟାଏ ଦେଇକି ପଖାଳ ଗଣ୍ଡାଏ ଖାଇଲ୍ ପରି ! ଏଠିକି ଆ, ଖଡ଼ା ଠିକିଏ ନେଇଯାଅ, ବାହାରୁ ଲଙ୍କାଠିଏ ଛିଣ୍ଡାଇ ଆଣି ଗଣ୍ଡେ ଖାଇ ଦେ । ମୁଁ କେଉଁଠୁ କଣ ଆଣିବି କହିଲୁ । ଆମେ କଣ ସାଇପଡ଼ିଶାଙ୍କ ପରି ବଡ଼ଲୋକ ହେଇଚେ ।

ନିରୁ କଥା ବୁଝିଲା । ଗଣ୍ଡେ ଖାଇ ଦେଇ ଘରଦୁଆର ଓଳାଇ ସଞ୍ଜବତୀ ବଳି ବସିଲା ।

   

ଦିନର ସଫା ଧଳା ପରଦା ଅସ୍ତେ ଉପରକୁ ଉଠିଗଲା । ରାତିର ଝାପ୍‌ସା କଳା ପରଦା ଅସ୍ତେ ତଳକୁ ଖସି ଆସିଲା । ଗହ୍ଵର ପାହାର

କେତେ ଲୋକଙ୍କ ଘରୁ ନାଲି ଝୋଟ ଆଲୁଅଟିମାନ ଜଳି ଉଠିଲା । ଗାଁ ସେମୁଣ୍ଡ ଭାଗବତ ଟୁଙ୍ଗିରୁ ଘଣ୍ଟା ଶଙ୍ଖ ବାଜିଲା । ବୋଉ ଡ଼ାକି କହିଲେ—ନିରୁ, ସଞ୍ଜବେଳା ଗଡ଼ିଗଲା, ଠାକୁର ପାଖରେ ସଞ୍ଜ ଦେଇଆ । ନିରୁ ସଞ୍ଜବତୀ ଲଗାଇ ଲୁଗା ଉହାଡ଼ କରି ଠାକୁର ପାଖକୁ ଆସିଲା । ଦୀପଟି ଥୋଇ, ଲୁଗା କାନି ବେକରେ ପକାଇ ତଳେ ମୁଣ୍ଡ ଲଗାଇଲା ।

ଶରତ ଘରଆଡୁ ଖୋଜି ଦେଖିଲା, ନିରୁ ଠାକୁର ମୂଳେ ଦଣ୍ଡବତ କରୁଛି । ଚୁପ୍ ଚୁପ୍ ଆସି ତା ପଛଆଡ଼େ ଠିଆହେଲା । ଟିକିଏ ଗଲା, ନିରୁ ଉଠି ପଛ ଆଡ଼କୁ ଘୁଞ୍ଚି ଆସିଲାବେଳେ ଶରତ ଦେହରେ ବାଡ଼େଇ ହୋଇଗଲା । ଶରତ ତା ଦୁ' ହାତକୁ ଧରି ଫେଁ ଫେଁ ହୋଇ କହିଲା—ଆମ ନିରୁ ବହୁତ କଥା ଶିଖିଲଣି ତ ! ଠାକୁର ପାଖରେ ଜଣାଉଥା, ଭଲ ବର ପାଇବୁ ଲୋ । ସେଦିନେବେଳେ କଣ କହୁଥିଲୁ ? ଗାଁ ପିଲାଙ୍କୁ ଡ଼ାକି ଆଣିଛି । କଅଁଳିଆ ଆମ୍ବପତ୍ର ଅଣ୍ଟାରେ ବାନ୍ଧି ଏଇକ୍ଷଣି କେତେ ଗୀତ ବୋଲି ନାଚିବେ । ମୋ ସାଙ୍ଗରେ ଆ ଦେଖିବୁ, ନୋହିଲେ ଜାଣିଥା—

ଅନ୍ଧାର ଭିତରେ ନିରୁର ମୁହଁଟି ଲାଜରେ ରଙ୍ଗା ପଡ଼ିଗଲା । ଟିକିଏ ବିରକ୍ତ ହୋଇ କହିଲା—ନା, ମୁଁ ଯିବିନାହିଁ ତୁମେ ମୋ ସାଙ୍ଗରେ ଆଉ ଲାଗିବ ନାହିଁ ।

ଶରତ ତା ମୁଣ୍ଡରେ ଓଢ଼ଣା ପକାଇ ଦେଇ କହିଲା—ନା, ମୋର ଦୋଷ ହେଇଛି, ତୁ ଆଉରି ଦଣ୍ଡବତ କର, ଭଲ ସୁନ୍ଦରିଆ ବର ପାଇବୁ ଯେ—

—ଡ଼ାକିବି ବୋଉକୁ ଶରତ ଭାଇ ? ମୁଁ ତୁମକୁ କେମାରୁ ଆଉ କଥା କହିବି ନାହିଁ । ତୁମଲାଗି ମୁଁ ଖାଇବେଳେ କେମାରୁ ଶୋଇଲି

ନାହିଁ । ସେଥିପାଇଁ କେତେ ଗାଳି ଖାଇଲିଣି । ତୁମ ସାଙ୍ଗରେ ଆଉ ଛିବ କରିବିନି......

ଶରତ ତା' ଢଙ୍ଗ ଦେଖିବା ପାଇଁ ତାକୁ ଛାଡ଼ିଦେଇ କହିଲା—ତୁ ମତେ ଖାଲି ସବୁବେଳେ ଗାଳି ଦେଉଛୁ; ମୁଁ ଆଉ ଜମାରୁ ତୁମ ଘରକୁ ଆସିବି ନାହିଁ । ଶରତ ଏକମୁହାଁ ହୋଇ ଚାଲିଲା ।

ନିରୁ ତାକୁ ଟିକିଏ ଅନାଇଲା । ସେ ଭାବିଲା, ସବୁଦିନ ପରି ଶରତ ଭାଇ କଣ ଆଜି ରାଗିବ ! କିନ୍ତୁ ଶରତ ନ ଫେରିବାରୁ ନିରୁର ମନଟି କଣ ହୋଇଗଲା । ତା ପଛେ ପଛେ ଦଉଡ଼ି ଯାଇ ଡାକ ପକାଇଲା—ଶରତ ଭାଇ—ଶରତ ଭାଇ ମୋ ରାଣ, ଫେରିଆସ ।

ଶରତ କିଛି ନ ଶୁଣି ଆଗକୁ ଚାଲିଥାଏ । ନିରୁ ପଛରେ ଉଦଉଡ଼ି ଦଉଡ଼ି ଯାଇ ତା ପିନ୍ଧାକାନିକୁ ଟାଣି ଧରି କହିଲା—ମୋ ରାଣ ଶରତ ଭାଇ, 'ଫେରିଆସ, ମୁଁ ସେମିତି ମିଛରେ କହିଲି ନା, ତୁମେ ସତରେ ରାଗୁଛ ?

ଶରତ ଟିକିଏ ମିଛିମିଛିକା ମୁହଁ ଶୁଖାଇ କହିଲା—ନା, ତୁ ମୋ ଉପରେ ରାଗୁଛୁ, ମତେ ଗାଳି ଦେଉଛୁ, ମୁଁ ଆଉ ତୁମ ଘରକୁ ଜମାରୁ ଆସିବି ନାହିଁ, ମତେ ଛାଡ଼େ, ମୁଁ ଯାଏ—

—ନାହିଁ ନାହିଁ ଶରତ ଭାଇ, ତୁମ ଦେହ ଛୁଉଁଛି, ମୋ ଆଖି ଛୁଉଁଛି, ତୁମକୁ ଆଉ ଦିନେ କିଛି କହିବି ନାହିଁ, ତୁମେ ଆସ ।

—ତୁ ମୋ କଥା ଜମା ମାନୁନୁ, ମୁଁ ଯିବିନାହିଁ ଜମାରୁ ।

—ହଁ, ଶରତ ଭାଇ, ତୁମ କଥା ଏଥର ନିଶ୍ଚେ ମାନିବି ।

ମୋ ଦେହ ଛୁଁ ।

ନିରୁ ଶରତ ହାତକୁ ଧରିପକାଇ କହିଲା, ତୁମ ଦିହ ଛୁଇଁ କହୁଛି, ଏଥର ତୁମେ ଯାହା କହିବ ନିଶ୍ଚେ ମାନିବି ।

—ସତ କହୁଛୁ ?

—ହଁ, ଥରେ କହିଲି ପରା ! ଆଉ କେତେଥର କହିବି କି ? ଶରତ ନିରୁକୁ ନିଜ କୋଡ଼ଆଡ଼କୁ ଅଉଜେଇ ଆଣି କହିଲା—ଦେଖା କାନଦେଖା ।

ନିରୁ ହସି ହସି କାନ ଦେଖାଇଲା—ଶରତ ତା କାନ ପାଖରେ ଚୁପ୍ ଚୁପ୍ କହିଲା—କହ, "ମୁଁ ତୁମକୁ ବାହା ହେବି ।"

—ଚୁପ୍ ।

ଚୁପ୍ କଣ ? ତୁ ପରା କହିଛୁ ମୋ କଥା ମାନିବୁ ! ଫେର ମନା କରୁଛୁ ନା ? ତାହାହେଲେ ମତେ ଛାଡ଼ ମୁଁ ଘରକୁ ଯାଏ ।

—ନିରୁକୁ ଭାରି ଲାଜ ମାଡ଼ିଲା, ଏଣିକି ତେଣିକି ଦୁ' ତିନିଥର ଅନାଇ କହିଲା—ହେଲେ ହେଲା ଯା ।

—ସେମିତି କହିଲେ ହବନାହିଁ, ତୁ କହ, "ମୁଁ ତୁମକୁ ବାହା ହେବି ।"

ନିରୁ ଶରତ ପିଢ଼ାକାନି ତଳେ ମୁହଁ ଲୁଚାଇ କୁରୁ କୁରୁ ହସି କହିଲା—ବାହାହେବି ଯା ।

ଶରତ ନିରୁକୁ ଯାବୁଡ଼ି ଧରି ଗେଲ କରିଦେଇ କହିଲା—ତୁ ସୁନାଝିଅ, ମୋ କଥା ମାନିବୁ—ଏଁ !

—ନିରୁ କିଛି କହିଲାନି ।

ଉପରେ ତରାଫୁଲଫୁଟା ଏତେ ବଡ଼ ଆକାଶ । ତଳେ ଗଛ ପତର ନଈ ନାଳ କେତେ କଣ । ତାରି ମଝିରେ ଛନ୍ଦ କପଟ ଶୂନ୍ୟ ଲାଗିଲଗି ଦୁଇଟି ପ୍ରାଣୀ । ଯୌବନର ମୋହ ଆକର୍ଷଣ କାହିଁ କେତେ ଦୂରରେ । ଦେହ ମୁଣ୍ଡରେ ଉଚ୍ଛଳ ଯୌବନର କାଉଁରି ପରଶ ଛୁଇଁନାହିଁ, ତଥାପି ଅବେଳଠାରେ ଜୀବନର ଏତେ ଗୁପ୍ତରହସ୍ୟ ଆରମ୍ଭ ହୁଏ କାହିଁକି ? ଯୌବନ ସମ୍ବନ୍ଧରେ ସବୁ କଥା ଜାଣିବାକୁ କୁତୂହଳ ଲାଗେ କାହିଁକି ?

ଠିକ୍ ଏ ଗଲା । ନିରୁ କହିଲା—ଶରତ ଭାଇ, ଆସ ଆମ ଘରକୁ ।

ଦୁହେଁ ଯାକ ଆସିଲେ ।

ନିରୁବୋଉ ସେତେବେଳକୁ ଭାତ ଦ'ଟା ବଢ଼ାଇ, ପରବା କାଢୁଥିଲେ । ଶରତ ଆଗରୁ ପଶିଯାଇ କହିଲା—ମାଉସୀ, ଶୁଣିଲଣି, ନିରୁ ମତେ କହୁଛି, ତୁମେ ଆମ ଘରକୁ ଆସିବ ନାହିଁ, ମୁଁ ତ କାଲିଠାରୁ ଜମାରୁ ଆସିବ ନାହିଁ ।

ନିରୁବୋଉ ସାରୁ ଦ'ଟା କାଢୁ କାଢୁ ହସି ହସି କହିଲେ—ସେ ଓଲିଟା କଣ ଜାଣିଛି ରେ ! ତୋ ଘର କଏ, ତା ଘର କଏ ?

ନିରୁ ଦଉଡ଼ି ଯାଇ ବୋଉ ପାଖରେ ବସି କହିଲା—ନାଇଁ ବୋଉ, ମୁଁ ଜମାରୁ କହିନି । ମୋ ନାଁରେ ମିଛରେ ଗାଳି କହୁଛନ୍ତି, ଭାରି ମିଛୁଆ ଶରତ ଭାଇଟା ।

ବୋଉ ହସିଲେ ।

ଶରତ ତା ପାଖକୁ ଯାଇ ତା ହାତ ଧରି ଟାଣି ଟାଣି କହିଲା—ହଁ—ମୁଁ ମିଛୁଆ ହେଲେ ହେଲି, ଆ—ପିଲାଙ୍କ ଖେଳ ଦାଣ୍ଡରେ ଦେଖିବା !

ନିରୁବୋଉ ହସି ହସି କହିଲେ—ମୋ ବାପୁଟା ଅସି କଷ୍ଟକରେ ପଢିଲଣି । ତୁଅଙ୍କ ଡ଼ଙ୍ଗ ଯାଇନି, ତୁମ ଇସ୍କୁଲ୍ ଛୁଟି କେବେ ପୂରିବ କରେ ?

—ମାଉସୀ, ଆଉ ଅଠଦିନ ରହିଲା । ମୁଁ ରବିବାର ଦିନ ଯିବା । ସୋମବାର କ୍ଲାସକୁ ଯିବାକୁ ପଡ଼ିବ ।

—ସତେ ନା, ଦିନଗୁଡ଼ାକ କୁଆଡ଼େ ଗୁଲି ଯାଉଛି ମ ? ପୁଅଟି ଅସି ଯିବାକୁ ବସିଲଣି, ଗଟେ ମୁଢ଼ା ଖାଇଲା ନାହିଁ । ନିରୁ ଲୋ—ଶରତ ଭାଇକୁ ତୋର କାଲି ଡାକାକେ ଡାଳ ଆଣିବୁ । ଆମ ଗରିବ ଘରେ କଣ ଖାଇବ ସେ !

ଶରତ ହସିଲା ।

ଦୁହେଁଯାକ ହାତ ଧରା ଧରି ହୋଇ ଦାଣ୍ଡ ଆଡ଼କୁ ଆସିଲେ ।

ଚନ୍ଦ୍ର ଉଠୁଲା ରୁପାର ଫଅାର । ସୁଲୁସୁଲିଆ ପବନ ଗହ୍ଵର ମଝିର ନାଚୁଣିଆ ଭୁଇଁଟା ଉପର ଦେଇ ଝାଲକାଲ ହୋଇ ଗାଁ ମଝିକୁ ଦଉଡ଼ ଆସୁଥାଏ । ଉପରେ କୋଟି କୋଟି ତରା ଆଖିମିଟିକା ମାରି କାହା ସଙ୍ଗେ ଠରାଠରି ହଉଥାନ୍ତି । ଗୋଠଛଡ଼ା ଡ଼ାମରା କୁଆଟା ଏକାଟିଆ ହୋଇ ଅକାଶଟାଯାକ ଚହଲ ପକାଇ ଥାଏ । ନିରୁ ଶରତ ଦୁହେଁଯାକ ପିଣ୍ଡା ଉପରେ ଯାଇ ବସିଲେ । ସେତେବେଳକୁ ଦାମା, ନରିଆ, ଚଇଁଆ, ହରି ନାୟକ ଝିଅ ସୁନି, ଗୋପୀ ସାଆନ ଝିଅ ଗୁଲୁବାସି, ମହନ ମିଶ୍ର ପୁଅ ମାଇଚିଆ ପୁନିଆ ବି ସେଠି ହାଜର ହୋଇଗଲେଣି । କାହା ହାତେ ଆମ୍ବ ଡ଼ାଳ, କାହା ଅଣ୍ଟାରେ କନିଅର ଡ଼ାଳ ପୁଳାଏ ।

ଶରତ ଏସବୁ ଦେଖି ଭାରି କୁତୁହଳ ହୋଇ କହିଲା—ଦାମା, ସେଦିନର ଶବଗି ଗୀତଟା ଗାଇଲୁ । ଭଲକରି ନାଚ, ଦି'ପଇସା ଦେବି । ତା' ପରେ—

ଦାମା, ହରିଆ ମୁହଁ ପାଖରେ ଅମ୍ବଡ଼ାଳ ହଲାଇ ଗାଇଲା—

କାଇଁଚ ଅଗରେ କଳା କାଇଁଚ ଅଗରେ କଳା

କଳା ମଚମଚ ଟୋକାଇଲା ପରି, ଶବଗିଲୋ !

ତୋର ମୋର ଭାବ ଅଛିଣ୍ଡା ପରି ।

ନରିଆ ଡ଼େଇଁଉଠି ଗାଇଲା—

ବଣ ମଲ୍ଲୀ ଗୋଟି ଗୋଟି,

ବଣ ମଲ୍ଲୀ ଗୋଟି ଗୋଟି—

ଲକ୍ଷେ ନାରୀ ମଧେ

ମୋ ନାରୀ ଥିଲେଟି,

ସୋହଗ ପରି ମୁଁ ଆଣିବି ଖୁଣ୍ଟି; ଶବଗି ଲୋ !

ମହନା ପୁଅ ମାଇଚଅ ପୁନଅଃା ମୁଣ୍ଡରେ ଗାମୁଛଃାକୁ ଓଢ଼ଣା ପକାଇ ମହିକୁ ପଣିପାଇ ବାହୁନ ଉଠିଲା—

"ଏତେ ନନ୍ଦାବୁଣ ହେଲେହେଁ ଅଜ
 ବାପା ସାଅନ୍ତ
ଉଚ୍ଛୁଳା ନଈକୁ ଫୋପାଡ଼ ଦେଲେ ହେ
 ବାପା ସାଅନ୍ତ"—

ପୁନିଅର ଏ ବାହୁନା ଦେଖି ସମସ୍ତେ ହୋ ହୋ ହୋଇ ହସି ଉଠିଲେ । ନିରୁ ହସି ହସି ଶରତ କୋଳରେ ଢ ଥର ଗଡ଼ି ଢ ଥର ଉଠିଲା । ଶରତ ଖୁବ୍ ଜୋରରେ ତାକୁ ଚପିଧରି କାଖରେ ହାତ ମାରି କୁତୁକୁତୁ କରୁଥାଏ ।

ଇମିତ କେତେବେଳ ଗଲା । ଅନ୍ତୁଣ୍ଡା ଗୀତ, ବେହୁରା ରାଗିଣୀ, ପିଲାଙ୍କ କୋଳାହଳରେ ବଉଳଗଛ ମୂଳଟି ଉଲସୀ ଉଠୁଥାଏ ।

ସଞ୍ଜୁଆ ତର୍ଜ ବୁଡ଼ିଲା । ଜହ୍ନ କାହା ସଙ୍ଗରେ ଲୁଚକାଳି ଖେଳି କାଳିଆ ବାଦଲ ପଛରେ ଲୁଚିଛପି ଯାଉଥାଏ । ଗାଁ ସେମୁଣ୍ଡ ମଶାଣି ଭିତରୁ କୋଲିଅଗୁଡ଼ାକ ଭୁକି ଉଠିଲେ । ନଈ ଉପର କଲରା କଅଁରୀ ପଲରୁ ଆଲୁଅ ଲିଭିଲା । ଅସ୍ତେ ଅସ୍ତେ ଗୁରୁଆଡ଼ ନିଃଶବ୍ଦ ହୋଇ ଉଠିଲା । ଶରତର ଗୁରୁକର ଆସି ଡ଼ାକିଲା—ବଡ଼ ସାଅନ୍ତେ ଭାରି ଖପା ହଉଛନ୍ତି ବାବୁ, ଭାତ ଶୁଖିଗଲାଣି, ଖାଇବେ ଆସନ୍ତୁ ।

ଶରତ ନିରୁକୁ କୋଲ୍ କରି ଦେଇ କହିଲା—ଯା ନିରୁ, ତତେ ନିଦ ମାଡ଼ିବଣି ।

ନିରୁ ସୁନା ଝିଅଟି ପରି ମୁଣ୍ଡ ଟେକୁଣାରି ଘର ଆଡ଼କୁ ଆସିଲା ।

× × × ×

ବାପା ତାର ସେତେବେଳକୁ ଗଣ୍ଡେ ଖାଇ, ଅଗଣାରେ ଦଉଡ଼ିଆ ଖଟ ଖଣ୍ଡେ ପକାଇ ଗଡ଼ପଡ଼ ହେଉଥାନ୍ତି । ନିରୁ ଘର ଭିତରକୁ ପଶିଯାଇ ଡାକ ପକାଇଲା—ବୋଉ, ବୋଉ, ଭୋକ କଲାଣି ଖାଇବାକୁ ଦେ ।

ବାପା ତାର ଅନାଇ କହିଲେ—କେଉଁଠି ଏତେବେଳ ଯାଏ ଥିଲୁ ମା' ? ତୋତେ ଭୋକ ଶୋଷ ସୁଦ୍ଧା ହଉ ନାହିଁ ? ଆସିଲୁ ମୋ ପାଖକୁ ।

ନିରୁ ବାପାଙ୍କ ପାଖରେ ଯାଇଁ ବସିଲା ।

ବାପା ପିଠିରେ ହାତ ବୁଲାଇ କହିଲେ—ଝାଳରେ ଜୁଡୁବୁଡ ହୋଇ ଯାଇଛୁ ମୋ ମାଆଟା, ଗାମୁଛାରେ ପୋଛି ହୋଇପଡ଼ ।

ନିରୁ ପୋଛି ହେଉ ହେଉ କହିଲା—ବାପା, ମୁଁ ପରି ଶରତ ଭାଇ ସଙ୍ଗେ ଖେଳ ଖେଳୁଥିଲି ।

ବାପା ଦୀର୍ଘ ନିଃଶ୍ୱାସ ଛାଡିଲେ । ନିରୁକୁ ପାଖରେ ବସାଇ ତା ପିଠିରେ ହାତ ବୁଲାଉ ବୁଲାଉ କେତେ କଣ ଭାବି ଯାଉଥାନ୍ତି । ଟିକିଏ ଛାଡି ଗୋଟାଏ ଲେଖା ଦୀର୍ଘ ନିଃଶ୍ୱାସ ବାହାରି ପଡୁଥାଏ । ଟିକିଏ ଗଲା, ବାପା ନିରୁକୁ ଆଦର କରି କହିଲେ—ଯା ଝିଅ, ବୋଉ ତୋର ଶୋଇ ପଡ଼ିଛି, ହାଣ୍ଡିରେ ଗଣ୍ଡେ ବାଢିଅଛି ଖାଇ ଦେ । ସପ ପକାଇ ପିଣ୍ଡାରେ ଶୋଇପଡ଼ ।

   

ଦିନ ପରେ ଦିନ ଗଡ଼େ, ତାରି ଭିତରେ ମନର ଅଜଣା ଆଶା, ମୋହମାୟାରେ ଦୁଇଟି ପ୍ରାଣ ଛନ୍ଦହୋଇ ପଡ଼େ । ମନର ବନ୍ଧନ ଦୃଢ ହୁଏ ।

   

ଶନିବାର ଉପରବେଳା । ଶରତ ଘର ଭିତରକୁ ପଶିଆସି କହିଲା—ମାଉସୀ, ମୁଁ କାଲି ସକାଳେ କଟକ ଯାଉଛି । ନିରୁ କାହିଁ ? ତାର ତ ଦେଖା ମିଳୁନାହିଁ, କୁଆଡ଼େ ବୁଲି ଯାଇଚି ?

ମାଉସୀ ଟିକିଏ ମୁହଁ ଶୁଖାଇ କହିଲେ—ସତରେ ଯିବୁ କାଲି ! କେଇଦିନ ହେଲା ମୋ ଘର ପୂରି ଉଠିଥିଲା । ଭଗବାନ ତୋତେ ଆଇଷ ଦେଇଥାନ୍ତୁ । ଆଉ କେଣ ଛୁଟି ହବନି, ଆଉ କେବେ ଆସିବୁରେ ! ଆଶା ଥିଲା ତୋତେ ସଙ୍ଗରେ ନେଇ ଭୁବନେଶ୍ୱର ଟିକିଏ ଯାଇଥାନ୍ତି । ସେତକ ବି ହେଲାନାହିଁ । ଆଉ ଯେବେ ଆସିବୁ, ସାଙ୍ଗହୋଇ ଯିବା ।

—ଶରତ କହିଲା—ମାଉସୀ, ଆଉ ଛ'ଟା ମାସ ପରେ ବଡ଼ଦିନ ଛୁଟି ହେବ, ମୁଁ ଆସିଲେ ଭୁବନେଶ୍ୱର ଯିବା । ନିରୁ କାହିଁ ?

—ବୋଉ ଡାକିଲେ ନିରୁ ନିରୁ, ତୋତେ ଶୁଭୁନାହିଁ କଲେ ! ପୁଅଟା ଆସି କେତେ ଖୋଜୁଛି, ନ ଶୁଣିଲା ପରି ସେଇ ଘରଟାରେ ବସିଛୁ ନା ।

—ନିରୁ ଟିକିଏ ଗମ୍ଭୀର କଣ୍ଠରେ କହିଲା—ନାଇଁ ମୁଁ ଯିବି ନାଇଁ, ସେ ତ କାଲି ଚାଲିଯିବେ······

ମଲା, ଆଉ ତୋ ସଙ୍ଗରେ ଖେଳିବାକୁ କଣ ବସିଥାନ୍ତା କି ?

ଶରତ ହସି ହସି ଆର ଘରକୁ ପଶିଗଲା ।

ନିରୁ ମୁହଁମାଡ଼ି ଶୋଇ ଖଣ୍ଡେ କାଗଜରେ କଣ ଲେଖୁଥାଏ । ଶରତ ତା' ଉପରକୁ ଅଉଜିପଡ଼ି ବସି କହିଲା—କଣ ଲେଖୁଛୁ ନିରୁ ?

—ନାଇଁ ଶରତ ଭାଇ, ତୁମେ ଦେଖନା, ଝଣାଝଣି ହେଲେ ଛିଣ୍ଡିଯିବ ଜାଣିଥା—

—ଇମିତ କାହିଁକି ହଉଛୁ, ମୁଁ ତୋର କଣ କଲିକି ?

—ନିରୁ ଭାରି ଅଭିମାନରେ କହିଲା—କଣ କଲ କି ? ତୁମେ ତ କାଲି ଗୁଳିଯିବ.. ...

—ଶରତ ତା' ମୁହଁକୁ ଉଠାଇ ଗୋଟିଏ ଚୁମ୍ବନ ଦେଇ କହିଲା—ଏଇଥିପାଇଁ ରାଗୁଛୁ ? ମୁଁ ଫେରେ ଛୁଟି ହେଲେ ଆସିବ ଯେ—ତୁ କଣ ଲେଖୁଛୁ ଦେଖା ।

ନିରୁ ଛଡ଼ାମଡ଼ା କରି କହିଲା—ନା, ତୁମକୁ ଜମାରୁ ଦେଖାଇବ ନାହିଁ ।

—ଶରତର ଭାରି କୁତୁହଳ ହେଲା ଦେଖିବା ପାଇଁ । ନିରୁକୁ ଜୋରରେ କୋଡ଼ ଭିତରେ ରଖି ସେଖଣ୍ଡ ଛଡ଼ାଇ ଆଣିଲା ।

ଯେମିତ ଶରତ ସେଖଣ୍ଡକ ନିଜ ହାତକୁ ନେଇଛୁ, ନିରୁ ତା' କୋଳରୁ ଜୋରକରି ଉଠି ଲାଜ ଲାଜ ହୋଇ ପଦାକୁ ପଳାଇ ଆସିଲା ।

—ଶରତ ଯେତେ ଡାକିଲା ଶୁଣିଲା ନାହିଁ । ତା'ପରେ ଶରତ ଲେଗୁକୋଗୁ କାଗଜ ଖଣ୍ଡକୁ ଫିଟାଇ ପଢିଲା ।

ଶରତ ଭାଇ,

ତୁମେ କାଲି କଟକ ଗୁଳିଗଲେ ମୋ ମନ ଭାରି କଷ୍ଟ ହେବ । କଟକ ଯାଇ ମୋ ପାଖକୁ ରଙ୍ଗ ଉଡ଼ାଏ, ଖଣ୍ଡେ ଚିଠି ଦେବ । ମୋତେ ଅଜା ଭାରି କାନ୍ଦ ମାଉଛୁ, ମୋ ରାଣ ପକାଇ ଯା, କେବେ ଆସିବ । ସେଦିନ ମୋ କାନରେ କଣ କହିଥିଲ ? ତମେ ଆସିଲେ ମୁଁ ତୁ—ମ—କୁ......

ଶରତ ଚିଠି ଖଣ୍ଡିକ ପଡ଼ ପଡ଼ୁ ତା ମନଟା ଭାରି ଗୋଳେଇ ଘାଣ୍ଟି ହେଲା । ନିରୁଟି ସତରେ ତାକୁ କେତେ ଭଲ ପାଏ ! ତାର ମନ ହେଉଥାଏ ତାକୁ ସଙ୍ଗରେ ନେଇ ଯାଆନ୍ତା କି ! ତା'ପରେ ଶରତ

ଉଠି ନିରୁକୁ ଖୋଜିବାକୁ ଗଲା ବେଳକୁ ନିରୁ ଚୁପ୍‌କରି ଦୁଆର ପାଖରେ ହାତରେ କଲମଟା ଧରି କାନ୍ଥକୁ ଖେଞ୍ଚୁଛି । ଶରତକୁ ଦେଖି ଦାଉଡ଼ି ପଳାଇ ଯାଉ ଯାଉ, ଶରତ ତା' ଲୁଗାକାନିକୁ ଧରି ଟାଣି ଟାଣି ଘରକୁ ଆଣିଲା । କୋଳରେ ବସାଇ କେତେ ଆଦରରେ ତା'ର ପିଠି ଆଉଁସି ଦେଉ ଦେଉ କହିଲା—ତୋ ଚିଠି ମୁଁ ଜମା ପଢିନି, କଣ ଲେଖିଛୁ ଲେଖ । ନିରୁ ସେ କାଗଜ ଖଣ୍ଡିକ ଛଡ଼ାଇ ନେଇ ଲୁଗା ଭିତରେ ଲୁଗୁଇଦେଲା ।

ତହିଁ ଆରଦିନ ସକାଳ । ଶରତ ଭୋରରୁ ଉଠି ଦାଦି ଖୁଡ଼ୀଙ୍କୁ ଦଣ୍ଡବତ କରି ନିରୁ ଘରକୁ ଆସିଲା । ନିରୁବୋଉକୁ ଦଣ୍ଡବତ କରି କହିଲା—ମାଉସୀ, ମୁଁ ଯାଉଛି, ଡ଼େରି ହେଲେ ମଠର ଫେଲ୍ ହେବି ।

ନିରୁବୋଉ ଆଶୀର୍ବାଦ କଲେ ।

ନିରୁ ପିଣ୍ଡା ଖୁଣ୍ଟକୁ ଧରି ଠିଆ ହୋଇଥାଏ । ଶରତ ତା ପାଖକୁ ଯାଇ କହିଲା—ନିରୁ, ସୁନାଟି ପରି ! ମନ କଷ୍ଟ କରିବୁନୁ, ମୁଁ ଛୁଟିରେ ଆସିବି ସେ—ମୁଁ ଯାଉଛି—ଏଁ !

ନିରୁ ଛଳ ଛଳ ଆଖିରେ ଲୁଗା କାନି ଭିତରୁ ଗୁରିକଣିଆ ଖଣ୍ଡେ କାଗଜ ଶରତ ଉପର ପକେଟରେ ଗଳାଇ ପକାଇଲା ।

ଶରତ ଆଖିରେ ଲୁହ ଛଳ ଛଳ ହୋଇ ଆସିଲା । ଅନ୍ତରର କୋହ ଉଠିଲା । ଟିକିଏ ନୀରବ ରହି ବଡ଼ କରୁଣ ସ୍ୱରରେ ଡ଼ାକିଲା, ନି—ରୁ !

ନିରୁ ଲୁଗା କାନିରେ ଲୁହ ପୋଛିଦେଇ ଖନ ଖନ କରି କହିଲା—ଶରତଭାଇ, ମୋ ରାଣ ପକାଇ ସତ କହ, ଆଉ କେବେ ଆସିବ ?

ଶରତ କହିଲା—ନିରୁ, ମୋ ରାଣ, ମୋ ସୁନାଟି ପରା, ଆଉ କାନ୍ଦେନା, ମୁଁ ଚାଲିଗଲା ପରେ ତୁ ଜମାରୁ ମନ କଷ୍ଟ କରିବୁନୁ । ତୁ ଯଦି ମନକଷ୍ଟ କରୁ, ତାହାହେଲେ ମୋ ମନରେ ଭାରି କଷ୍ଟ ହେବ, ପଢ଼ାପଢ଼ି ଜମାରୁ କରି ପାରିବ ନାହିଁ । ସବୁବେଳେ ତୋତେ ଭାବି କାନ୍ଦିବ । ତୁ ମନରେ ଜମାରୁ କଷ୍ଟ କରନା, ମୁଁ ବଡ଼ଦିନ ଛୁଟିରେ ନିଶ୍ଚୟ ଆସିବି । ସାଙ୍ଗହୋଇ ଭୁବନେଶ୍ୱର ଯିବା ।

—ନିରୁ କଥା କହି ପାରିଲାନି । ନିଜ ହାତରେ ନିଜେ ଲୁହ ପୋଛି ଶରତ କଥାରେ ମୁଣ୍ଡ ହଲାଇଲା ।

ଦୁହେଁଯାକ ନୀରବ ଅନେକକ୍ଷଣ ।

ନିରୁବୋଉ ଗାଧୋଇ ତଉଲ୍‌ରେ ପାଣି ଦେଇ ଦେଇ କହିଲେ, କାଲୋ ନିରୁ, ପୁଅଟାକୁ ଏତେବେଳଯାଏ ଅଟକାଇଛୁ କାହିଁକି କହିଲୁ ? କେତେ ବାଟ । ଖରା ଏଇକ୍ଷଣି ବାହାରପରି ମାଡ଼ି ଆସିବ । ମଟର ନ ପାଇଲେ ଛୁଆଟାର ଅବସ୍ଥା କଣ ହେବ କହିଲେ ନ ସରେ । ଯା'ରେ ବାପ । ଖରା ମାଡ଼ି ଆସିଲାଣି । ମଞ୍ଜୁଷା ପାଖକୁ ଗୋଟେ ଖଣ୍ଡେ ଲେଖୁଁ ଦେଉଥିବୁ ।

ଶରତ ଯେ ଅନେକ ବାଟ ଯିବ, ଏ ଧାରଣା ତାର ସେତେବେଳକୁ ନଥିଲା । ସେ ଚମକିପଡି ଦେଖିଲା ଖରା ଅନେକ ହେଲାଣି । ବେଳାବେଳ ନ ଗଲେ ମଟର ପାଇବା ଅସମ୍ଭବ । ସେଇଠୁ ସେ ନିରୁର ଛୋଟ ହାତଟିକୁ ଟାଣିଆଣି ଅତି ସଗରେ ଚୁମ୍ବନଟିଏ ଦେଇ କହିଲା—ନିରୁ, ମୋ ରାଣ, ଜମାରୁ ମନ କଷ୍ଟ କରିବୁନୁ । ମୋ ପାଖକୁ ବରାବର ଚିଠି ଦେବୁ । ମୁଁ ଯାଉଛି—ଏଁ ।

ନିରୁ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ ମୁଣ୍ଡ ହଲାଇଲା ।

ଶରତ ଭରତର ହୋଇ ଆଗକୁ ଗୁଳବାକୁ ଲଗିଲା । ନିରୁ ପିଣ୍ଡା ଖୁଣ୍ଟକୁ ଧରି ଏକ ନୟନରେ ଅନାଇଁ ଛିଡ଼ା ହୋଇଥାଏ । ଶରତ ଯେ ଆଜ କେତେକ ଯାଉଛନ୍ତି ଏକଥା ତା ଆଖି ଆଗରେ ନାଚି ନ ଉଠେ କେତେ ଦିନର କେତେ ରହସ୍ୟ ଘଟଣା ଆଖି ଆଗରେ ଛବି ପରି ଗୋଟି ଗୋଟି ହୋଇ ନାଚି ଦଣ୍ଡକେ କୁଆଡେ ଉଭେଇ ଯାଉଥାଏ । ତା' ଅଜାଣତରେ ମଧ୍ୟ କେତେ ଟୋପା ଲୁହ ଆଖିରୁ ବୋହି ଆପେ ଆପେ ଶୁଖିଗଲଣି ତାକୁ ଜଣା ନାହିଁ । କେତେବେଳ ଗଲା, ବୋଉ ଘର ଭିତରେ କଣ କାମ କରୁ କରୁ ଡ଼ାକଲେ—ନିରୁ, ଇଆଡେ଼ ଟିକିଏ ଆସିଲୁ । ନିରୁର ଚେତା ଆସିଲା । ଖୁବ୍ ଦୂରକୁ ଅନାଇ ଦେଖେ ଶରତ ଭାଇ ତାର ଅନେକ ଦୂରରେ ।

ନିରୁ ଆଖିର ସବୁ ଶକ୍ତି ଦେଇ ଅନାଇଲା, ଶରତ ଭାଇର ସେ ଗୋରା ଟକଟକ ଦେହ, ହସ ହସ ମୁହଁଟି ପୁଣି ଥରେ ଦେଖିନେବାକୁ । କିନ୍ତୁ ନିରୁର ସବୁ ଆଶା ବୃଥା ହେଲା । ଶରତ ଗଛ ପତର ଉହାଡ଼ରେ ଅଦୃଶ୍ୟ ହୋଇଗଲା ।

ଯୌବନର ମୋହ ଆକର୍ଷଣ ମନରେ ପୂରି ଛୁଇଁନାହିଁ । ଅନ୍ତରର କେଉଁ ଗୋଟ ପରଦା କଣରୁ ବାହାରକୁ ଆସିବାକୁ ଉଙ୍କି ମାରୁଛି, ତଥାପି ଜଣକ ପାଇଁ ନିରୁର ଆଖିରୁ ଲୁହ ଝର ଝର ହୋଇ ବହି ପଡ଼ିଲା । ଅନ୍ତରରେ କେତେ କୋହ, କେତେ ବେଦନା ଧରି, ଘର ଆଡ଼କୁ ମୁହଁ ବୁଲାଇଲା ।

ଶ୍ୟାମସୁନ୍ଦରବାବୁ—ଶରତର ଦାଦା ।

ହର ପଧାନ ତା ଛ'ମାଣିଆ କଆରରେ ହଳ ବୁଲାଉ ବୁଲାଉ ଗୋଟାଏ ଦୀର୍ଘ ନିଃଶ୍ୱାସ ପକାଇ କହିଲା—ଏ ଯୁଗରେ ଆଉ ଧରମ ନାହିଁରେ ପରଆ । ଦୁନିଆ ଓଲଟି ପଡ଼ିବା କଥା ଛଡ଼ା ଆଉ କଣ !

ପରଆ କୋଡ଼ରେ ଖଡ ଏଣିକି ତେଣିକି ପକାଉଥିଲା, ଟିକିଏ ବନ୍ଦ କରି କହିଲା—କଣ ବୋଇଲେ ସାଆନ୍ତେ ?

—ନାଁ ରେ, କଣ କହିବି—ସେଇ ଶାମବାବୁଙ୍କ କଥା—ଗାଁ ମୁରବୀ ଜମିଦାରଙ୍କ କଥା ! ଧରମ ଆଉ ନାହିଁ, ଚନ୍ଦର ସୁରୁଜ ଓଲଟି ଯିବେ ରେ ଏଥର ।

ପରଆ ଟିକିଏ ଗଲା ଖଙ୍କାରି ମୁରୁକିହସା ମାରି କହିଲା— କଣ କହିବି ସା'ନ୍ତେ । ଆପଣ ତ ବାପ ସମାନ । ଆପଣଙ୍କଠୁ ଅକଲ ଶିଖିଛୁ । ସାଆନ୍ତଙ୍କ କଥାଟା କାହିଁକି ମନକୁ ପାଇଲା ନାହିଁ ଜମାରୁ । ଧରମ କୁଆଡ଼େ ଯିବ ? ନିକିତି ଧରି ଦାନବ୍ରତ ବଇଚି । ଛୁଇଁ, ମାଣ୍ଡି ପରଖ ସେଠି । ଏ ଅନ୍ୟାୟ ସେଠି କଣ ସମ୍ଭାଳି ହେବ ? ସେଥିପାଇଁ ପରା ଭାଗବତରେ କହିଛି—

"ମରଣକାଳେ ବିପରୀତ ବୁଦ୍ଧି"

ଏ ପଦ କଣ ଅନ୍ୟଥା ହେବ ସା'ନ୍ତେ । ଜମାରୁ ନୁହେଁ । ଏ ପାଖର ସୁରୁଜ ସେ ପାଖରେ ଉଇଁଲେ ବି ନୁହେଁ । ଏ ବା କିବା କଥା ।

—ଏ ଯୁଗରେ ଦାଇଁ ଦେବତା କୁଆଡ଼େ ପଥର ପାଲଟି ଗଲେଣି ରେ । ଆଚ୍ଛା କହିଲୁ, ସନା ମଲିକର କି ଦୋଷ ଭଲା ? ବାପ ମା ଚଳଉଛି ଭାଇ ଭଉଣୀ ଦ'ଟା । ପାଟଙ୍କ ଖାତ ହେଲେ କଣ

ହେବ, ଖାନ୍‌ଦାନ ଘରପର ଅଚଳ । ଶାମବାବୁଙ୍କ ପୁଅ ମଦନ କଥା କିଏ ନ ଜାଣେ ? ଆଖପାଖ ଦଶଖଣ୍ଡି ଗାଁରେ ଡବ ଡ଼ବ ବାଜୁଛି । ଛି ଛି, ମଣିଷ ପୁଣି ଧନ ଗର୍ବରେ ଇମିତ ହୁଅନ୍ତି ରେ ।

ଏକଥା କିଏ ମିଛ ? ସନା ଯାଇଛି ଶଙ୍ଖ ବଜାଇ ଆର ଗାଁକୁ । ପଲ୍ଲ ଭିତରେ ବଢିଲା ଭଉଣୀ ସୁନାଟି ଏକା । ସଞ୍ଜବେଳରୁ ଝିଙ୍କିଏ ଗଡ଼ୁଛି । ଏଡ଼େ ସାହସ କାହାର ହେବ ! ସୁନା, ଭାଇ ଆସିବ ବୋଲି ଭିତ ଚଣ୍ଡା ବସାଇ ପରିବା କାଟୁଛି । ପଛରୁ—ଛି—ଛି ! କାନ ଫେରି ଯା' ଶୁଣିଲା । ଘୋର କଳିକାଳ । ମାଇକିନିଆ ଝିଅ, ବଳ କେତେ । ଛଟିପିଟି ହେଇ ପଡ଼ି ତ କଲା, ଅଉ ତାର ଗୁହାରି କିଏ ?

ସନା ଯେମିତ ଫେରିଛି ଦେଖିଲା—ଭଉଣୀ ମୁଣ୍ଡ ପିଟି ନହୁନୂହାଣ । ସବୁ କଥା ଶୁଣିଲା । ଘୃଣା, ରାଗରେ ତା' ହୃଦୟ ଫାଟି ପଡିଲା । ଗୁହାରିଅଡ଼ ତାକୁ ଅନ୍ଧାର ଦେଖାଗଲା । କାହାର ନ ହେବ ! ଯାହାର ଝିଅ ବୋହୂ ପିଲାପିଲି ଥିଛନ୍ତି, ସେକଥା ସେ ଜାଣେ । ସନା ଭଲିଆ ଥଣ୍ଡା ପିଲଟା ରାଗରେ ପାଗିଗଲା । ଛୋଟ ଜାତି ବୋଲି କଣ ତାର ମାନ ମହତ ନାହିଁ !

ସେଇ କଥା ତ ! ଠାଣି ଠାଣି କରି ଯେମିତ ତାଙ୍କ ଦାଣ୍ଡ ଦୁଆର ମୁହଁରେ ଦଂପଦ ଶୁଣାଇ ଦେଇଛି, ଅଉ ଯାଏ କୁଆଡ଼େ ? ବାପ କହିଲେ ପୁଅ ମୋର ଗୋଟିପଣ ତୁଳସୀ । ପୁଅଙ୍କ କଥା ତ ଛାଡ଼ । ନ୍ୟାୟ ବିଚାର ପାଇବ କିଏ, ତା' ବଦଳରେ ତା' ପିଠି ସିଜିଲା, ମୁଣ୍ଡ ଫାଟିଲା । ଆହା ଯେଉଁ ବିକଳ ତାର, ପାଷାଣ ହେଲେ ତରଳି ଯିବ । ମଣିଷ ମନ ହେଇ କେମିତ ଏସବୁ କଥା ସହିଲା କେଜାଣି । ଏତକ ନୁହେଁ, ଅଦେଶ ହେଲା—ଗାଁରୁ ନିଆଁ ପାଣି ମୂଲ ସବୁ ବନ୍ଦ । ମଣିଷ ସନା ଯା' କଲା, ଭଗବାନଙ୍କ ପାଖରେ କିଏ ଏ ବିଚାର ଠିକ୍ ? ତା'

ଯେଉଁ ଗ୍ରାମଖଣ୍ଡକ କଣ ଯ୍ୟାଙ୍କର ଲାଗି ଅପେକ୍ଷା ରହିଛି ! ଭଗବାନ ଯେତେବେଳେ ଜନମ ଦେଇଛନ୍ତି, କଷ୍ଟସୃଷ୍ଟ—ଦାନା ଖଞ୍ଜିଛନ୍ତି । ମଣିଷର ଗର୍ବ ଆଉ କେତେଦିନ । ଏ କଣ ସୁନା ସିନ୍ଦୁକରେ ମୁଣ୍ଡ ରଖି ସବୁଦିନେ ବଞ୍ଚିବେ ?

—ପରୀଆ ମୁଣ୍ଡରେ ଠେକା ବାନ୍ଧି ଫାଉଣ୍ଡ୍ରାରେ ଖତ, ମାଟି ସଙ୍ଗେ ମିଶାଇ ମିଶାଇ କହିଲା—କାହିଁକି କଉଛନ୍ତି ସେକଥା ସା'ନ୍ତେ । ଯେ ତୁଳସୀ ସେ ତୁଳସୀ, ଯିଏ ବଳୁଆଡ ସେ ବଳୁଆଡ । ବଡ଼ ସାଆନ୍ତେ ଯଦି ବଞ୍ଚିଥାଆନ୍ତେ, ଏତେକଥା ମଣିଷ ପୁଣି ଶୁଣନ୍ତା । ଏତେ ଘଟଣା ପୁଣି ଗାଁରେ ଘଟନ୍ତା ! ଦେବର ଏହା ବଡ଼ ଅବୁଝାମଣା । କଳିକାଳରେ ଭଲଲୋକ ସବୁ ଯାଉଛନ୍ତି, ଯିଏ ପର ତଣ୍ଟି ଚିପିବ, ସେଇ ଲମ୍ବା ସିନ୍ଦୁକରେ ମୁଣ୍ଡ ବାନ୍ଧି ରହୁଛି ।

—ସେ କଥା କହନା ରେ ପରୀଆ—ସେ କଥା କହନା । ଜମିଦାର ବୋଲି ତାଙ୍କୁ କଣ ଲୋକେ ଭାବୁଥିଲେ ! ଠିକ୍ ଭାଇ ପରି । ଆପଦ ବିପଦରେ ବଡ଼ଭାଇ ପରି ଆଉ କିଏ ଠିଆ ହେବ ! ସେ ଗଲେ, ତାଙ୍କ ପଛେ ସ୍ତ୍ରୀ ଗଲେ । ଗାଁରୁ ଶିରୀ ତୁଟିଲା । ବାପ ବି ଯେମିତ ପୁଅ ବି ସେମିତ । ମାଣ୍ଡୁକ ମ ବୋଲି କହିବ ନାହିଁ । ଗାଁରେ ଅପେ ଲୋକଙ୍କୁ ଚିହ୍ନିଶ କି ନାହିଁ । ଭଗବାନ ତାଙ୍କୁ ଆଇଶ ଦେଇଥିଲେ । ଦେଖ୍‌ନା ଯ୍ୟାଙ୍କ ଛତର ପୁଅ ପରି କିଏ ହେବ । ଗୁଣ ଅର୍ଜିବା ପାଇଁ କେଉଁ ବାଇଜାରେ ଯାଇ ପଢୁଛି । ତାର ମଙ୍ଗଳ ହେଉ, ସୁଖରେ ଘର କରୁ । ଦିନେ ସେହି ବାପ ମା'ଙ୍କ କୀର୍ତ୍ତି ଫେରାଇ ଆଣିବ ଯେ ! ଏଇ ଯୋଡ଼ା ଦାନ୍ଦ ଖୁଡ଼ୀ ଭାଲୁ ସଇଲେ ହେଲା । ଏ ଯୁଗରେ କାହାକୁ ବିଶ୍ୱାସ । ସମ୍ପତ୍ତି ଲାଗି ଯଦି······ ହେ ଭଗବାନ ତା ନ ହେଉ ।

ସୂର୍ଯ୍ୟ ଦେବତା ମୁଣ୍ଡ ଉପରକୁ ଆଇଲେ । ହର ପଥାନ ମୁଣ୍ଡ ଉପରକୁ ଦ'ଥର ଅନାଇଁ କହିଲା—ବେଳ ଗଡିଲାଣି, ଗୃଲ ପରିଆ । କାଳିଆଠା ଶୋଷରେ ସଇଁ ସଇଁ ହେଲଣି । କାଲି ଖଡପକା ନାଇଁ, ଭୋରୁ ହଳ ଫିଠାଇ ଆଣିଲେ ଛ'ମାଣିଆଠା ସରିଯିବ । ଯାହା ଶୁଣିବା, ଯାହା ଦେଖିବା, ଉପାସ୍ତ କରିବାକୁ ଆମର ଗୃହ୍ୟ କଣ । ଧରମ ଥିଲେ ସବୁ ବୁଝିବ ।

× × × ×

ଖରା ତେଜ କମେ, ସନ୍ଧ୍ୟା ଘାଟରେ ମଣିଷ ଯିବା ଆସିବା କରନ୍ତି । ନିରୁଟି ବାଁ ହାତରେ ପାଣି ନୋଠିଏ, ଡ଼ାହାଣ ହାତରେ ଫହଁରଟିଏ ଧରି ଦାଣ୍ଡକୁ ଆସେ । ପାଣି ନୋଠାଟି ଚଉରା ଉପରେ ରଖିଦେଇ, ଫହଁରଟି ଧରି ଡାଣ୍ଡପିଣ୍ଡା, ବଉଳ ମୂଳ, ଚଉରା ପାଖ ଝଇଁଝଇଁ ହୋଇ ଓଳାଇ ଦିଏ । ମା' ଘରଆଡୁ ଡ଼ାକନ୍ତି—କାଲୋ ନିରୁ, ତୁ ଏଡ଼େ ଅମାନିଆଠା ? ମୁଁ କହୁଛି ଘର ଆଉ ଠିକିଏ ଯାଉ, ଏତେ ଦିନ ଥାଉଁ ତୋତାର ଓଳାଓଳି ଲଗିଛି ? ନିରୁ ଶଙ୍କିଗଲା ପରି କହେ—ମୋର କେତେ କାମ ମାଆ । ଦାଣ୍ଡ ଓଳାଇବି, ବଉଳ ଫୁଲ ତୋଳିବି, କଅଁଳା ବାଛୁରୀକି କାଣ୍ଡିଅକୁଣ୍ଡା ଗୋଳି ପିଆଇବି, ଫୁଲ ଗୁନ୍ଥିବି, ସଞ୍ଜବତୀ ବଳିବି, ବେଳାବେଳ କାମ ନ ସରିଲେ କେମିତି ହବ ମା' ।

ମା' ମନେ ମନେ ଭାବନ୍ତି, ନିରୁଟି ମୋର କେଡ଼େ କୁହାର ବୋଲର, ଲକ୍ଷ୍ମୀଟି ମୋର । ହେ ଭଗବାନ, ତା କପାଳ ଭଲ ହେଉ । ଶରତକୁ ଦେଖି ତା ସରଳ ଜୀବନଟି ସୁଖରେ କଟିଯାଉ । ଶରତ କଥା ଭାବୁ ଭାବୁ ତାଙ୍କ ଦେହ ଥରି ଉଠେ । ଆଖି ବୁଜି ହୋଇ ପଡ଼େ ।

ଆଖିକଣରୁ ଦ'ଧାର ଲୁହ ଗଡ଼ି ପଡ଼େ । ଦଣ୍ଡେ ନୀରବ ରହନ୍ତି । ଅନ୍ତର ଭିତରୁ ଗୋଟାଏ ଦୀର୍ଘ ନିଶ୍ବାସ ବାହାରି ଆସେ—କାନ୍ଥରେ ମୁଣ୍ଡ ଲଗାଇ କହନ୍ତି—ହେ ଭଗବାନ୍, ତୁ ଭ-ର-ସା ।

ନିରୁଟି ଗୁଣୁଗୁଣୁ ହୋଇ ଗୀତ ଗାଇ ସବୁଆଡ଼ ଓଳାଇଦିଏ । ଅଗଣା କୂଅରୁ କୋଠି କୋଠି କରି ପାଣି ଆଣି ଗୁରୁଆଡ଼େ ଛିଞ୍ଚି ଦିଏ । ନିରୁର ହାତ ବାଜି ଘରଟି ଗୁଳ ଘୁରୁଟି ଛବିଟି ପରି ଦେଖାଯାଏ । ମଥୁରି ଅଜା ସେଇବାଟେ ଗାମୁଛା ପିନ୍ଧି ହାତରେ ବାଡ଼ି ଧରି ପୋଖରୀ-ପାଣି ଗଲାବେଳେ ଥଟ୍ଟା କରି କହନ୍ତି—ହଇହୋ ନିରୁବୋଉ, ତୁମ ଝିଅଟିକୁ ମତେ ବାହା କରିଦିଅ । ଇମିତକା ଟୋକାବର ଆଉ ପାଇବ ନାହିଁ । ନିରୁର ମତେ ଖିଜି । କାଲି ମୋତେ ଚୁପ୍ ଚୁପ୍ କରି କହୁଥିଲା ଫରି ବାହା ହବାକୁ ।

ନିରୁ ଭାରି ଚିଡ଼ିମିଡ଼ି ହୋଇ କହେ—ଦେଖିଲୁ ବୋଉ, ଏ ଅଜା ବୁଢ଼ାଟା କେମିତ ମୋ ସାଙ୍ଗରେ ଲଗେଇଛି । ଏଇଥିକି ପାଣି ପୋପାଡ଼ିବି ଯେ...... ।

ମଥୁରି ଅଜା ତାଙ୍କ ପାକୁଆ ପାଟିରେ ହସ ଫୁଟାଇ କହନ୍ତି, କଣ କହିଲୁ ଟୋକି ? ମୁଁ ବୁଢ଼ା ? ଭେଣ୍ଡିଆ ବର ଆଉ କିଏମ !

ମା' ଦାଣ୍ଡ ପିଣ୍ଡା ଖୁଣ୍ଟି ପାଖରେ ଠିଆ ହୋଇ କହନ୍ତି, କଲ୍ୟାଣ କର ତାକୁ । ସୁଢ଼ୁଙ୍ଗ ବୁଢ଼ିରେ ଘର କରୁ ।

ମଥୁରି ଅଜା ହସି ହସି କହନ୍ତି—ନିରୁଟି ବେଶ୍ ଝିଅଟିଏ ହେବ । ତା ରୂପ ଦେଖି ତ ସତରଗଣ୍ଡା ଟୋକା ନିଆଁକୁ ଡ଼େଇଁବେ । ମୁଁ ଖାଲି କଲ୍ୟାଣ କରୁଛି କେମିତ ଝିଅ ବାହା ହେବ, ବୁଢ଼ା ଖିରିପିଠା ଖାଇବ । କାଲେ ନିରୁ, ମୁଁ ଫରି ଥରେ କହିଲି ମତେ ଚଞ୍ଚଳ ମଙ୍ଗିଯା' କାଲି ବାହାଘର କରିଦେବା ।

ନିରୁ ଫୁଲଡ଼ାଲାଟି ଥୋଇ ଦେଇ, ମଟୁରି ଅଜାଙ୍କ ହାତ ବାଡ଼ିକୁ ଧରି ଏଣେ ତେଣେ ଝିଣି ପକାଏ । ଅଜା ହାଉଳି ହୋଇ କହନ୍ତି— ଛାଡ଼ ଛାଡ଼, ତତେ ମୁଁ ଆଉ ପାରିବି ନାହିଁ, ଏହା କହୁ କହୁଁ ବାଡ଼ିଖଣ୍ଡ ଧରି ହରି ମଳିକ ବାଉଁଶବାଡ଼ି ଆଡ଼କୁ ପୋଖରୀପାଣି ବସି ଯାଆନ୍ତି ।

ମା' ଘର ଭିତରକୁ ଯାଆନ୍ତି । ନିରୁ ଫୁଲ ଗୁଙ୍ଗୁଡ଼ିଟି ଧରି ବଉଳଫୁଲ ଗୋଟି ଗୋଟି ସାଉଣ୍ଟୁଥାଏ । ତା' ଅଜାଣତରେ ମୁଣ୍ଡରୁ ଲୁଗା ଖସିଯାଏ । ପବନଟା ନିରୁର ଘନ ଚିକଣ ବାଳ ଭିତରେ କଣ ଖୋଜି, କାଲ୍ କାଲ୍ ହୋଇ ଛାତି ଭିତରେ କି ଗୁପ୍ତ ଧନର ସନ୍ଧାନ କଲାବେଳେ ଖୁବ୍ ଜୋରରେ କମ୍ପୁଡ଼ି ହୋଇ ପଡ଼େ । ଭୟରେ ହାଉଳି ହୋଇ ଲୁଗାକୁ ଟେଳି ପକାଇ ଯିବାବେଳେ ନିରୁକୁ ଭାରି ସୁଲୁସୁଲୁ ଲାଗେ । ସେ ତରତର କରି ଛାତି ଉପରକୁ ଲୁଗାଟା ଟେକିଲାବେଳେ, ନିରୁକୁ ଭାରି ଲାଜ ମାଡ଼େ । ଆଖି ଦୁଇଟି ବୁଜି ହୋଇ ଆସେ ।

ଏଇ କେଇଦିନ ହେଲା ତା' ଦେହ ମୁଣ୍ଡରେ ଶୀଘ୍ର ଶୀଘ୍ର ଯେଉଁ ପରିବର୍ତ୍ତନ ହେଉଛି, ସେକଥା ତାକୁ ଭାରି ଅଡୁଆ ଅଡୁଆ ଲାଗୁଛି । ସେ ଭାବେ—ଆଉ ଦି'ମାସ ପରେ ଶରତ ଭାଇ କଟକରୁ ଆସିଲେ ଏସବୁ ଦେଖି କଣ ଭାବିବେ ! ସେ ତ ଦେଖି ଯାଇଛନ୍ତି ଏସବୁ ମୋର କିଛି ନ ଥିଲା । ସେ ପ୍ରଥମେ ଯେତେବେଳେ ଆସି ମୋ ପାଖକୁ ଦଉଡ଼ି ଆସିବେ, ସେତେବେଳେ ଏ ସବୁ ଦେଖି ମୋତେ ଚିହ୍ନି ପାରିବେ କି ନାହିଁ କେଜାଣି ? ସେ ବା କେଉଁ ମୁହଁରେ ଏସବୁ ତାଙ୍କୁ ଦେଖାଇବ । କ୍ଷଣକ ମଧ୍ୟରେ ଆକାଶ ପାତାଳ କେତେ କଣ ଭାବି ଯାଏ । କିନ୍ତୁ ଏହି ଭାବନା ମଝିରେ ଗୋଟିଏ ଛୋଟ ଭାବନା

ଆନନ୍ଦରେ କୁଦା ମାରେ । ଭାବୁ ଭାବୁ ଦେହ ଶୀତେଇ ଉଠେ । ଶରତ ପାଇଁ ସେ ଯେମିତ କେତେ କଷ୍ଟରେ ଏସବୁ ତିଆର କରି ରଖିଛି । ଶରତ ଭାଇ ଆସିଲେ, ଏସବୁ ତାର ଦେଖି ବଡ଼ ବିସ୍ମିତ ହେବେ । ଏହିକଥା ଭାବି ତା ମନ ଆନନ୍ଦରେ କୁତୁଳି ଉଠେ । ଗୋଟାଏ ଅଜଣା ସୁଖ ଆଶାରେ ମନଟା ଛଟପଟ ହୁଏ । ଇମିତ କେତେ କଣ ଭାବି ଶେଷରେ ଠିକ୍ କରେ—ଶରତ ଭାଇ ପ୍ରଥମେ ମୁରୁକିହସା ମାରି ଯେତେବେଳେ ଆସି ତା ପାଖରେ ଠିଆ ହେବେ, ଗୋଡ଼ଠାରୁ ମୁଣ୍ଡଯାକେ ଅନାଇ ସବୁ ନୂଆକଥା ଦେଖି ହସ ହସ ମୁହଁରେ ତା' ଆଖି ସଙ୍ଗରେ ଆଖି ମିଳାଇବାକୁ ଚେଷ୍ଟା କରିବେ, ସେତେବେଳେ ସେ ଆଦୌ ତାଙ୍କ ମୁହଁକୁ ଚାହିଁବ ନାହିଁ । ନିରୁ ନିରୁ ବୋଲି ଡାକି ତା' ହାତଟିକୁ ତାଙ୍କ ଆଡ଼କୁ ଟାଣିନେଲାବେଳେ ସେ ମିଛିମିଛିକା ଟାଣି ହେବ—ଲଜ କରିବ । ଶରତ ଭାଇ ଭାରି ହସି ହସି କହିବେ, କାଲେ ନିରୁ, କେଉଁ ଦିନଠୁ ଏତେ ଲଜ କରି ଶିଖିଲୁଣି ମ ? ବାଃ, ଖାସା ବୋହୁଟିଏ ହେବତ ! ଏକଥା କହି, ମୁଁ ଯେ ମାଇକିନିଆ ଝିଅ, ଯୌବନର ପ୍ରଥମ ପାହାଚରେ, ସେକଥା ସେ କିଛି ନ ଭାବି ଜୋର କରି ତା ହାତକୁ ଧରି ତାଙ୍କ ଛାତି ଉପରକୁ ଆଉଜାଇ ପକାଇବେ । ସେତେବେଳେ ତା'ର ଆଉଜି ପଡ଼ିବାକୁ ଭାରି ଇଚ୍ଛା ଥିଲେ ସୁଦ୍ଧା ଟିକିଏ ଭଙ୍ଗି ମୋଡ଼ି ହୋଇ ଚୁରିଆଡ଼କୁ ଦି'ଥର ଅନାଇଁ ତାଙ୍କ ଛାତି ଉପରକୁ ଆଉଜି ରହିବ । ସେ ବଡ଼ ଆଦରରେ ତା' ମୁହଁଟିକୁ ଉଠାଇ କେତେ ସୋହାଗରେ ଚୁମ୍ବନଟିଏ ଦେଲାବେଳେ ସେ ଆଖି ଫେରାଇ ତାଙ୍କ ମୁହଁକୁ ଚାହିଁବ ନାହିଁ । ଖାଲି ମୁରୁକି ହସିବ । ଶରତ ଭାଇ ହସି ହସି ଗାଲରେ ଗୋଟିଏ ଚୁଟି ଚୁପୁଡ଼ା ମାରି କହିବେ—ଇସ୍, ଲଜ ହେଉଛି ନା ! ମୋରି ପାଖରେ ? ଗାଲ ଚିପି ଦେଲେ ଦୁଧ ବାହାରିବ, ଆଉ ପୁଣି ଗୋଟେ ଲଜ ?

ଇମିତ ସ୍ୱପ୍ନରାଇଜରେ ବୁଲି କେତେ କଣ ଭାବି ଯାଏ । ଫୁଲ ସାଉଁଟା କେତେବେଳେ ବନ୍ଦ ହୁଏ ତାକୁ ଜଣା ଯାଏନା । ଆଖି ଦୁଇଟି କାହା ଉଦ୍ଦେଶ୍ୟରେ କାହାଁକୁ ଗହ୍ୱର ପାରରେ, ଯେଉଁଠି କୁଆଁ କୁ ବଣି ଉଡିଗଲେ ଅଦୃଶ୍ୟ ହୁଅନ୍ତି, ସେଇଠି ମିଶିଯାଏ । ସେ ଯେ କେଉଁ ସୁଖ ପାଇଁ ଏତେ ଭାବୁଛି, ସେକଥା ମନରେ ତାର କଳ୍ପନା ଆସେ ସତ, କିନ୍ତୁ ଠିକ୍ କଳ୍ପନା ନୁହେଁ—ଝାପ୍‌ସା କୁହୁଡ଼ି ପରି ।

ଇମିତ କେତେ ସମୟ ଯାଏ । ବୋଉ ହାଣ୍ଡି କୁଣ୍ଡେଇ ଧୋଇ ସଞ୍ଜବତୀ ବଳି, ପୋଖରୀପାଣି ପିବାବେଳକୁ ଡାକନ୍ତି—କଲେ ନିରୁ, ଏତେ ଫୁଲ ଆମର କଣ ହେବ କି ? ନିରୁର ଚେତା ପଶେ । ଗହ୍ୱର ପାରରୁ ଆଖି ଦୋ'ଟି ଫେରି ଆସେ ଫୁଲ ଗୁଣ୍ଡୁଡ଼ାକୁ । ତାର କେତେ ସୁଖ ଭାବନା ଦଣ୍ଡକରେ ସବୁ ଗୋଳମାଳ ହୋଇଯାଏ । ଫୁଲ ଗୁଣ୍ଡୁଡ଼ାକୁ ଅନାଇଁ ତାକୁ ଭାରି ଲାଜ ମାଡ଼େ, ଯିଏ ଦେଖିବ କହିବ କଣ ? ଦ'ଘଣ୍ଟା ହେବ ଫୁଲ ସାଉଁଟି ଅଧମୁଠା ଫୁଲ ସହିତେ ହେବ ନାହିଁ । ବୋଉ ପୁଣି ଥରେ ଡାକିଦେଇ ଗୃହ ଯାନ୍ତି । ନିରୁ ଆଉ ନ ବସି ଉଠି ଠିଆ ହୁଏ । ଫୁଲ ଡାଲିଟି ଲୁଗା କାନି ତଳେ ଘୋଡ଼ାଇ ଭାଗବତ ଘରକୁ ଯାଏ ।

ଗୃହଅତେ ସଞ୍ଜ ଲାଗେ । ନିରୁ ସଞ୍ଜବତୀ ଲଗାଇ ଲୁଗାକାନି ତଳେ ଦୀପଟି ଉହାଡ଼ କରି ଚଉଁରା ପାଖକୁ ଆସେ । ଲୁଗା କାନିଟିକୁ ଓଲଟାଇ ବେକରେ ପକାଇ ବୃନ୍ଦାବତୀଙ୍କ ପାଖରେ ମୁଣ୍ଡ ଲଗାଇ କହେ—ହେ ମା ବୃନ୍ଦାବତୀ, ତୋ ପାଦତଳେ ମୁଁ ଆଶ୍ରା ନେଲି । ମୋ ଦୁଃଖ କଥା ତୁ ବୁଝିବୁ । ଅନ୍ତରରୁ ଗୋଟାଏ ଦୀର୍ଘ ନିଶ୍ୱାସ ବାହାରି ଆସେ । ପୁଣି ଠିଆ ହୋଇ କାହା ଉଦ୍ଦେଶ୍ୟରେ ହାତ ଦୋ'ଟି ଟେକି ଦଣ୍ଡବତ କରେ ।

ଦିନ ପରେ ଦିନ, ମାସ ପରେ ମାସ କଟେ ।

× × × ×

ସବୁଦିନ ପରି ଗୋଟାଏ ଗୃହ୍ନମୀ ରାତି । ଆକାଶର ଧଳା କଳା ବଉଦ ଦେହରେ ଜହ୍ନ ତାର କେଉଁ ମାନସୀ ସାଙ୍ଗରେ ଚୋରାମସା ଖେଳି କିଲ୍‌କିଲ୍ ହୋଇ ବଉଦର ପଣତ ତଳେ ଲୁଚି ଛପି ଯାଉଥାଏ । ଆକାଶର କୋଟିଏ ତାରା-ସଖି, ଏ ଦୃଶ୍ୟ ଦେଖି ଆଖିମିଟିକା ମାରି ଠାରେଠାର ହେଉଥାନ୍ତି । ଝରକା ବାଟେ ଦେଇ ଜ୍ୟୋତ୍ସ୍ନା ଶରତ କୋଠରୀକୁ ଅଧେ ଆଲୁଅ କରି ଦେଇଥାଏ ।

ପରୀକ୍ଷା ସମୟ । ହଷ୍ଟେଲର ସବୁ ପିଲା ଯିଏ ଯାହା ରୁମ୍‌ରେ ବସି ପାଠ ପଢିବାରେ ବ୍ୟସ୍ତ । ଶରତ ବହି ଖଣ୍ଡେ ଧରି ଝରକା ପାଖ ଟେବୁଲଟା ଉପରେ ପକାଇ ପଢୁଥାଏ । ରାତି ପାହିଲେ ପରୀକ୍ଷା । ସବୁ ବିଷୟ ମନେ ରଖିବାକୁ ହେବ । ପୁଣି ଡାକ୍ତରୀ ପାଠ । କିନ୍ତୁ ଗୋଟାଏ ବିଷୟ ଭଲ କରି ମନେ ରଖିବାକୁ ଆରମ୍ଭ କରି ଶେଷକଲା ବେଳକୁ ଦେଖେ—ତାର କିଛି ମନେ ରହୁନାହିଁ, ମଝିରେ ସବୁ ଗୋଳମାଳ ହୋଇ ଯାଉଛି ।

ନିଜେ ଟିକିଏ ବିରକ୍ତ ହୁଏ । ଝରକା ବାଟେ ପବନ ଆର ପାଖକୁ ଦଉଡି ଗଲାବେଳେ ଝରକା ରେଲିଂ ବାଜି ଗୋଟାଏ କରୁଣ ସ୍ୱର ବାହାରେ । ଶରତ ଝରକା ବାଟେ ଦେଇ ଗୃହେଁ ଗୃହ ଧଉଳା ଏତେବଡ଼ ଆକାଶକୁ । ସବୁଦିନ ପରି ଏ ଜହ୍ନଟାର ସେହି ଲୁଚକାଳି ଖେଳ, ତାରା ସଖିଙ୍କର ସେହି ଆଖି ଠାରେଠାରେ ମୁରୁକି ହସା । ଶରତର ମନଟା କେମିତି କେମିତି ହୁଏ । ଆଖି କୋଣରେ ଟିକିଏ ଲୁହ ଆସେ । ଇମିତି କେତେବେଳ ଯାଏ, ଝରକା ବାଟେଦେଇ ପୁଷ୍ପାଙ୍କ

ଗୃହକରଣ୍ଟା ଗୃହଲଗଠଲେ, ଶରତ ଚମକି ପଡ଼େ । ଏତେଗୁଡ଼ାଏ ବହୁ ତାକୁ ଥରେ ଗଡ଼ାଇ ନେବାକୁ ହେବ, ନଠେତ ସର୍ବନାଶ ।

ଲଣ୍ଠନ ଅଲ୍ପଅଟା ଭଲ କରି ତେଜି ଦଏ, ପକେଟରୁ ସିଗାରେଟ ଉବାଟା କାଢି ଗୋଟାଏ ସିଗାରେଟ ଲଗାଏ । ତା'ପରେ ଖୁବ୍ ମନ ଦେଇ ବହିଟାକୁ ଅରମ୍ଭ କରେ । ଦୁଇପୃଷ୍ଠା, ପାଞ୍ଚପୃଷ୍ଠା, ଦଶପୃଷ୍ଠା ଇମିତ ପଢି ପତ୍ରଗୁଡ଼ିକ ଓଲଟାଇ ଗୃହଲଥାଏ । କେତେବେଳେ ଯେ ତା' ପଦ ଲେଉଟା ବନ୍ଦ ହୁଏ, ଆଖି ଦୁଇଟି ସ୍ଥିର ହୋଇଯାଏ । ସେ ଜାଣି ପାରେନା, ବାହାରେ କେଉଁଠି କଣ ହେଉଛି, ସେ ଶବ୍ଦ କାନରେ ପଡ଼େନା । ଇଂରାଜୀ ବହୁ ପତ୍ରଟି ତାକୁ ଦେଖାଯାଏ— ବଙ୍କାଟଙ୍କା ଅକ୍ଷରରେ ଲେଖା କେତୋଟି ଓଡ଼ିଆ ଧାଡ଼ି । ସେ ଖୁବ୍ ଅଗ୍ରହରେ ପଢ଼େ ।

ଶରତ ଭାଇ,

ତୁମେ ଗୃହଲଗଲେ ମୋ ମନ ଭାରି କଷ୍ଟ ହେବ, କାନ୍ଦ ମାଡ଼ିବ । ମୋ ସ୍ୱପ୍ନ ପଚାଇ ଯା' କେବେ ଆସିବ । କଟକରୁ ଆସିଲାବେଳେ ଗୋଟାଏ ରଙ୍ଗଡ଼ିବା, ସବୁ ମୋଟ ଫୁଲ ଦୁଇ ଡଜନଟା ଆଣିବ । ସେ ଦିନ ମୋ କାନରେ କଣ କହୁ ଯାଇଥିଲ ? ତୁମେ ଆସିଲେ ଯାଇ ସେ—କି—ଥା— ।

ଶରତ ଥରେ ପଢ଼େ, ଦୁଇଥର ପଢ଼େ, ତଥାପି ତାର ମନ ବୋଧ ହୁଏ ନାହିଁ । ପୁଣି ଆଉ ଥରେ ଆରମ୍ଭ କରେ । ଇମିତ କେତେ ଥର ଯେ ପଢ଼େ ତାକୁ ଜଣାଯାଏ ନା । ପଢୁ ପଢୁ ସେଥିରେ ଦେଖାଯାଏ ଝାପସା ଗୋଟାଏ ଛବି । ଠିକ୍ ନରୁ ମୁହଁ ପରି । ଶରତ ଭାବେ ଏ ତ ଠିକ ନରୁ ମୁହଁ ନୁହେଁ । ଆଉ କାହାର ବୋଧହୁଏ ।

କିନ୍ତୁ ସନ୍ଦେହ ହୁଏ—ଏ ତ ନିଶ୍ଚୟ ନିରୁର ମୁହଁ । କେବଳ ପରିବର୍ତ୍ତନ ଘଟିଛି ସିନା ! ମନେ ମନେ ଠିକ୍ କରେ, କିଏ ଜାଣେ ଏଇ କେଇଟା ମାସ ଭିତରେ ଯେ ନିରୁର ପରିବର୍ତ୍ତନ ହୋଇ ନ ଥିବ !

ଛବିଟା ଆଉରି ଟିକିଏ ସଫା ହୋଇ ବାରି ହୋଇ ଯାଏ । ଟୋଟି ଟୋଟି ଗୋଲପି ଅଧରଟି ଥରି ଥରି ହେଲାପରି ତାକୁ ବୋଧହୁଏ । କାହିଁ କେତେ ଦୂରରେ ଗୋଟାଏ କ୍ଷୀଣ ଶବ୍ଦ ଶୁଭାଯାଏ । କିଏ ଯେମିତି ବଡ଼ ପାଟି କରି ଡ଼ାକୁଛି—ଶରତ ଭାଇ ? ଶରତ ଭାଇ ?

ଶରତ ଦେହଟା କେତେବେଳୁ ଯେ ଗରମ ହୋଇ ବରଡ଼ା ପତରର ପରି ଥିବୁଛି, ସେକଥା ସେ ଜମା ଜାଣି ନାହିଁ । ଛବିଟାକୁ ଭଲ କରି ଚାହିଁ ଦେଖିଲା—ଆଖିରେ ଲୁହ, ଅଧର ଥର ଥର । ସେ ପାଗଳ ପରି ଠିଆ ହୋଇ ନିରୁର ଅଧରକୁ ଚୁମ୍ବନ ଆଶାରେ ଗ୍ରୀବାରେ ଭିଡ଼ି ଧରିବାକୁ ବାହୁ ମେଲାଇଲା ବେଳକୁ କେହି କୁଆଡ଼େ ନାହିଁ । ଶୂନ୍ୟ—ମହାଶୂନ୍ୟ । ଶରତ ସ୍ୱପ୍ନ ରାଇଜରୁ ଉଠିଲା ପରି ଚମକି ପଡ଼ି ଘରର ଚାରିଆଡ଼, ଖଟ ତଳକୁ ଚାହେଁ । କେହି କୁଆଡ଼େ ନାହିଁ । କେବଳ ତା' ଦେହଟା ବରଡ଼ା ପତର ପରି ଥିବୁଛି । ଝାଳ ବାହାରି ଗେଞ୍ଜିଖଣ୍ଡ ଜୁଡୁବୁଡୁ । ଶୋଷରେ ତଣ୍ଟି ଅଠା ଅଠା । କୋଠରୀଟା ଭାରି ମାଞ୍ଚ ମାଞ୍ଚ ପଡ଼ୁଛି । ଆଗରେ ଥୁଆ ହୋଇଥିବା ଛବି ଖଣ୍ଡିକୁ ଚାହେଁ । କାହିଁ ? ଛବି ଫଟୋ କିଛି ନାହିଁ । ନିରୁର ଫଟୋ ଖଣ୍ଡିକ କଣ କୁଆଡ଼େ ଉଡ଼ିଗଲା ? ଆଗରେ ଖାଲିତ ଗୋଟାଏ ଶୁଖ ଇଂରାଜୀ ବହି । ତାହାହେଲେ କଣ ସେ ପାଗଳ ହୋଇ ଯାଇଛି, ନା ସ୍ୱପ୍ନ ।

ଶରତ ଚଟିଟା ଗୋଡ଼ରେ ପୂରାଇ ବାହାରକୁ ଆସିଲା । ସେତେବେଳକୁ ହଷ୍ଟେଲର ଦୁଇ ତିନିଟା ଚୁମ୍ବକ ଘଡ଼ଦେଲେ ବାକି ଭିତରୁ ଆଲୁଅ ଲିଭିଗଲାଣି । ବାହାରର ଗୋଳମାଳ ଏକବାରେକ ବନ୍ଦ ।

ବାରଣ୍ଡାରେ ଟିକିଏ ଠିଆ ହୋଇ ଏଣେ ତେଣେ ଅନାଉଛି, ପୁଷ୍ପା ଆସି ଡାକିଲା—ବାବୁ, ଏଇକ୍ଷିଣା ବାରଟା ବାଜିବ । ଆଉ ଅଧଘଣ୍ଟା ପରେ ଆଲୁଅ ପାଣି ସବୁ ବନ୍ଦ ହେବ । ମୁଁ ଦୁଇ ତିନିଥର ଡାକି ଫେରିଗଲିଣି, ଚଞ୍ଚଳ ଆସ ବାବୁ ମୁଁ ବଢ଼ାବଢ଼ି କରୁଛି ।

ଶରତର ଦେହଟା ଝୋଲ ମାରିଲା ପରି ଲାଗୁଥାଏ । ମନ ବି ଭାରି ବ୍ୟସ୍ତ ହେଉଥାଏ । ପୁଷ୍ପା ପୁଣି ଆସି ଡାକିଲା—ଆସ ବାବୁ ? ଖାଇବା ଯାଗାରେ ଶରତ ଯାଇ ବସିଲା, କିନ୍ତୁ ଖାଇବାକୁ ଆଦୌ ଇଚ୍ଛା ହେଲା ନାହିଁ । ଅଳ୍ପ ଖଣ୍ଡାଏ ଖାଇ, ଦୁଧ ଚୋପାଏ ପିଇ, ଶୋଇବା ଘରକୁ ଆସିଲା । ଆଗପରି ଘରଟା କେମିତି ମାଡ଼ି ମାଡ଼ି ପଡୁଛି । କେଇ କୁଆଡ଼େ ନାହିଁ । ବହିପତ୍ର, ହାଡ଼ି କେଇଖଣ୍ଡ ଏପାଖ ସେପାଖ ହୋଇ ଥୁଆ ହୋଇଛି । ଘରଟା ନିର୍ଜନ । ଦଣ୍ଡେ ପହର- କରେ ପବନ ଘର ଭିତରେ ପଶି ବହିଗୁଡ଼ାକ ସଙ୍ଗରେ ଯାହା ଖେଳ ଲଗାଇଛି ସେତିକି । ଶରତ ଚେୟାର ଉପରେ ଟିକିଏ ବସିଲା, ତାର କେତେରକମ ଭାବନା କୂଳ ଅକୂଳ, ଆକାଶ ପାତାଳ ନ ମାନି ଧାଇଁ- ବାକୁ ଲାଗିଲା । ଦଣ୍ଡକେ କେତେ ଭାବନା ଆସି ପୁଣି ମିଳାଇ ଯାଏ— ସମୁଦ୍ରରେ ଉଠୁଥିବା ଗୋଟାକ ପରେ ଗୋଟାଏ ତରଙ୍ଗ ପରି । ଇମିତି କିଛିସମୟ ଗଲା । ଶରତ ଠିକ୍ କଲା—କାଲି ନିଶ୍ଚୟ ନିରୁ ପାଖକୁ ଖଣ୍ଡେ ଚିଠି ଲେଖିବ । ତା' ପରେ ସେ ବିଛଣାରେ ଯାଇ ଶୋଇଲା । ବିଛଣାଟା ତାକୁ ଭାରି ଗରମ ଗରମ ଲାଗୁଥାଏ । ଏପାଖ ସେପାଖ ହୋଇ କେତେବେଳେ ଯେ ନିଦ ଆସିଗଲା ସେ ଜାଣି ପାରିଲା ନାହିଁ ।

ଭୋର ଷଜନର କଅଁଳ ହାତ ବାଜି ଶରତର ନିଦ ଭାଙ୍ଗିଯାଏ । ମନରେ ଅନ୍ୟ କିଛି ନ ଭାବି ମୁହଁ ହାତ ଧୋଇ ଖାତା ପେନସିଲ ଧରି ପଦ୍ମା ହଲକୁ ବାହାରେ ।

ବାରଟା ବାଜିଲେ ପରୀକ୍ଷା ଦେଇ ସବୁ ପିଲା ହଷ୍ଟେଲକୁ ଫେରନ୍ତି । ପରୀକ୍ଷାରେ କିଏ କେମିତି ଫଳ କରନ୍ତି, ସେହି କଥା କଥାବାର୍ତ୍ତା ହୋଇ ଘଣ୍ଟାଏ ବିତେ, କାହାର ମୁହଁ ଶୁଖେ, କାହାର ବା ଭବିଷ୍ୟତ ଉଜ୍ଜ୍ୱଳ ଆଶାରେ ମନ କୁରୁଳି ଉଠେ ।

ଗୋଟାଏ ବାଜେ, ଦୁଇଟା ବାଜେ, ଶରତ ବହିପତ୍ର ରଖି ଦେଇ ଚିଠିଲେଖା କାଗଜ ଖଣ୍ଡେ ଧରି ହର କଲମଟାକୁ ଦାଢ଼ରେ କାମୁଡ଼ି ଆରମ୍ଭ କରେ—

ମେଡ଼ିକାଲ ହଷ୍ଟେଲ
ତା ୧୬-୯-୩୮

ସ୍ନେହର ନିରୁ,

ଆଗେ ମୋର ସ୍ନେହଭରା ଚୁମ୍ବନଟିଏ ଗ୍ରହଣ କରିବୁ । ମୁଁ ଭଲକରି ଜାଣେ, ଅନେକ ଦିନରୁ ତୋ ପାଖକୁ ଚିଠି ନ ଦେଇ-ଥିବାରୁ ତୁ ରାଗିଥିବୁ । ସେଇଟା ମୋର ଦୋଷ । ଖବର କାଗଜରେ ପଢ଼ିଥିବୁ ମେଡ଼ିକାଲ ଧର୍ମଘଟ କଥା । ସେଇଥିପାଇଁ ମୁଁ ଏତେଦିନ-ଯାଏ ଯାଇ ପାରିନାହିଁ । ପରୀକ୍ଷା ଆଉ ତିନି ଚାରିଦିନ ପରେ ଶେଷ ହୋଇଯିବ । ମୁଁ ଏଇ ଆଠଦିନ ମଧ୍ୟରେ ନିଶ୍ଚୟ ତୋ ପାଖରେ ପହଞ୍ଚିବି । ମୋ ରାଣ, ସତ କହିବୁ ନିରୁ, ତୁ କଣ ମୋତେ ସବୁ-ବେଳେ ଭାବୁଛୁ ? କାଲି ତୋତେ ସପନ ଦେଖିଲି, ତୁ କେଉଁଠିଏ ହୋଇ ଯାଇଛୁ । ମୋ କୋଳରେ ବସି ମୋ ବେକ ଗୁଡ଼ିପଟେ ହାତ ବୁଲାଇ କେତେ କଣ କହୁଛୁ । ସତ କହୁଛି ଲୋ, ସପନଟା ଭାଙ୍ଗିଗଲା ପରେ ମନଟା ମୋର ଭାରି କଷ୍ଟ ହେଲା—କାନ୍ଦ ମାଡ଼ିଲା । ମୋତେ ଅନ୍ନ ଖାଇବାକୁ ବି ଭଲ ଲାଗୁନାହିଁ । ତୁ ଏ ଚିଠି ପାଇ ଶୀଘ୍ର ଚିଠି

ଦେବୁ । ତୋର ଯାହା ଦରକାର, ଫେରନ୍ତା ଡ଼ାକରେ ଲେଖିବାକୁ ଭୁଲିବୁ ନାହିଁ । ମାଉସୀ ଓ ମଉସାଙ୍କୁ ମୋର ପ୍ରଣାମ ଜଣାଇଦେବୁ । ମାଉସୀଙ୍କୁ କହିବୁ, ମୁଁ ଗଲା ସଙ୍ଗେ ସଙ୍ଗେ ଭୁବନେଶ୍ୱର ଯିବି । ମୋ ରାଣ । ମୋ ଲାଗି ମନ କଷ୍ଟ କରିବୁ ନାହିଁ । ବନ୍ଦାଯୃ ନେଲି ।

ତୋର
'ଶରତ' ଭାଇ

ଶରତ ଚିଠି ଖଣ୍ଡିକ ଲେଖିସାରି ପୁଣି ଥରେ ପଢ଼ିଲା । ସୁଟ-କେଶରୁ ଅତର ବାହାର କରି ଦୁଇ ତିନି ବୁନ୍ଦା ପକାଇ, ନେଳିଆ ଲଫାପାରେ ଗୋଲ ଗୋଲ କରି ଠିକଣା ଲେଖି ମୁଦ ଦେଲା । ଚାକରକୁ ଡାକି କହିଲା—ଏ ଚିଠି ଖଣ୍ଡ ହୁସିଆରରେ ନେଇ ଡ଼ାକ-ଘରେ ପକାଇ ଦେଇ ଆ'ତ ?

—ଯାଉଛି ଆଜ୍ଞା !

× × × ×

ଦୁଇଦିନ ପରେ—

ବେଳ ରଡ଼ ରଡ଼ ହେଉଛି । ବାପା ବୋଉ ହାତ ଧୋଇ ଅଗଣା ଖଟିଆ ଉପରେ ବସି ଗାମୁଛାରେ ଗୋଡ଼ ପୋଛୁ ପୋଛୁ ଡ଼ାକିଲେ—ନିରୁ ? ନିରୁ ? କୁଆଡ଼େ ଗଲୁ କଲେ !

ନିରୁ ଅରଘରେ ବହି ପଢୁଥିଲା । ବାପାଙ୍କର ପାଟି ଶୁଣି ତରତର କରି ବହିଟାରେ ଚିହ୍ନ ଦେଇ ଆସି କହିଲା—କାହିଁକି ଡ଼ାକିଲ ବାବା ? ବାପା ହସି ହସି କହିଲେ—ତୋର ଗୋଟିଏ ଜିନିଷ ଆଣିଛି, ନିରୁ । ମୋତେ କଣ ଦବୁ କହ ? ନିରୁର ମୁହଁଟି ସତେଜ ହୋଇ ଉଠିଲା । ଆଗ୍ରହ ଆଉ ଆନନ୍ଦରେ କହି ଉଠିଲା—ଦିଅ ବାବା, ଆଗେ ଦିଅ ?

ବାପା ନିରୁର ଆନନ୍ଦରେ ଅସ୍ପୃହଣ୍ ହୋଇ ପଡ଼ିଲେ । ନିରୁର ପିଠିରେ ହାତ ମାରି କହିଲେ—ଯା' ମୋ ଉପର ପକେଟରେ ଖଣ୍ଡେ ଚିଠି ଅଛି । କାଗଜପତ୍ର ଖେଳାଇବୁନି, ଧିର କରି ଆଣିବୁ ।

ନିରୁ ତରତର ହୋଇ ପକେଟରୁ ଲଫାପା ଖଣ୍ଡିକ ନେଇ ଆର ଘରକୁ ପଳାଇ ଗଲା । ଶରତ ଭାଇ ଦେଇଛନ୍ତି, ଏହି କଥା ଦେଖି ତା' ଦେହ ଶୀତେଇ ଉଠୁଥାଏ । ଚିଠିଟା ପଢ଼ିସାରି ଆଉ ଥରେ ପଢ଼ିଲା ବେଳକୁ ତା' ଭାବନା ସ୍ଥିର ହୋଇଗଲା । ଲଜ୍ଜା ଆଉ ଆନନ୍ଦରେ ମୁଣ୍ଡ ତଳକୁ ନଇଁ ପଡ଼ିଲା । ଶରତ ଭାଇ କେମିତି ଜାଣିଲେ—ମୁଁ ଏତୁଟିଏ ହୋଇଗଲିଣି ବୋଲି, ଚିଠିରେ କଣ ସେ ତାଙ୍କ ପାଖକୁ ଲେଖିବ ! ଇମିତି ଉଦ୍ଭୁଲା ଭାବନା ଦଣ୍ଡିକେ କେତେ ଆସି ପୁଣି କୁଆଡ଼େ ମିଳାଇ ଯାଉଥାଏ ।

ଘରଟା ଅନ୍ଧାର କଟି କଟି । ନିରୁ ଶରତର ଚିଠି ଖଣ୍ଡିକ ହାତରେ ଧରି, କଳ୍ପନାରେ ତାର ଛବି ଦେଖୁ ଦେଖୁ କେତେବେଳେ ଯେ ଦେହ ମୁଣ୍ଡରୁ ଏକବାରକେ ଲୁଗା ବାହାରି ତଳେ ଲୋଟି ଟୋଳି ହୋଇ ପଡ଼ିଛି, ତାକୁ ଜମାରୁ ଜଣାନାହିଁ । କେତେବେଳ ପରେ 'ପୁନି' ବିଲେଇଟା ଘର ଭିତରକୁ ପଶି ଘରର ଏ କଣ ସେ କଣ ବୁଲି ଆସି, ଗୋଟାଏ ନୂଆ ଜନିଷ ଦେଖିଲା ପରି ତା' ମୁହଁକୁ କଟମଟ କରି ଚାହିଁ ମିଆଁଉ ମିଆଁଉ ବଡ଼ ଜୋରରେ ହେଲା । ନିରୁ ତାକୁ ହୁରୁଡ଼େଇ ଦେଲା ବେଳକୁ ଦେଖେ, ତା' ଦେହ ମୁଣ୍ଡରେ ଜମା ଲୁଗା ନାହିଁ । ତା' ଛାତିଟା ଧପ୍ ଧପ୍ ହୋଇ ପଡ଼ିଲା । ବୋଉ କି ବାପା ଏ ଅବସ୍ଥାରେ ଦେଖିଥିଲେ କଣ ଭାବିଥାନ୍ତେ ! ପୁଣି ହାତରେ ଚିଠି । ତାକୁ ଭାରି ଡର ମାଡ଼ିଲା । ଲୁଗାଟା ସଜାଡ଼ି ବାହାରକୁ ଆସି ଦେଖେ, ସଞ୍ଜବେଳ ଗଡ଼ିଗଲାଣି । ସାଇରେ କେହି ନାହାନ୍ତି । ତରତର କରି

ଚିଠିଟାକୁ ଅଣ୍ଟାରେ ଗୁଞ୍ଜି ଦେଇ ସଞ୍ଜବତୀ ଲଗାଇ, ଘରଦୁଆର ମୁହଁରେ, କୂଅ ପାଖରେ, ବତୀ ଦେଖାଇ ଚଉରା ପାଖକୁ ଆସିଲାବେଳକୁ ଦାଣ୍ଡ-ଦୁଆର ମୁହଁରେ ମା' ଭେଟିଯାଇ କହିଲେ—କିରେ ! ଏତେବେଳଯାଏ ସଞ୍ଜ ଦେଇ ନଥିଲୁ ନା ? ରାତି ଅସି ଘଡ଼ିଏ ହେଲାଣି ?

ନିରୁ ଟିକିଏ ଶଙ୍କିଯାଇ କହିଲା—ତୁ ଡ଼ଆସିଲାଠା କେଉଁଠି ରଖିଗଲୁ, ମୁଁ ଖୋଜି ଏଇକ୍ଷଣି ପାଇଲି, ମୁଁ କଣ କରିବି । ମା' କିଛି ନ କହି ଚାଲିଗଲେ । ସେଦିନ ନିରୁ ହୃଦୟର କେତେ ଗୋପନଭରା କଥା ବୃନ୍ଦାବତୀଙ୍କ ପାଖରେ ଜଣାଇ ଘରକୁ ଫେରିଲା ।

ମା' ଭାତ ଗାଳି ତରକାରୀ ରାନ୍ଧିଲାବେଳେ 'ନିରୁ ତା' ପାଖରେ ଠିଆହୋଇ କହିଲା—ବୋଉ, ଶରତଭାଇ ପତ୍ର ଚିଠି ଦେଇଛନ୍ତି, ସେ ଆସିଲେ ଭୁବନେଶ୍ୱର ଯିବାକୁ, ତୁ ଯିବୁ ନା ?

ବୋଉ ଟିକିଏ ବିସ୍ମିତ ହୋଇ କହିଲେ—ଆଜି ଚିଠି ଦେଇ-ଥିଲା ? ଡାକ ପିଅନର ତ ଆଜି ବାର ନୁହେଁ । କିଏ ଚିଠି ଆଣିଲୁ ?

—ବାପା ଆଣିଥିଲେ ପରା !

—ବୋଉ ଚଳକି ଜାଳ ଫେଲି ଦେଉ ଦେଉ କହିଲେ—ଦେଖଯାଉ, କଣ ହେଉଛି । ଦର୍ଶନ କରିବାରେ ତ ମୋର ଭାରି ଇଚ୍ଛା । ହାତରେ ତ ପଇସା ପତର ଗୋଟିଏ ନାହିଁ । ଲିଙ୍ଗରାଜଙ୍କ ଇଚ୍ଛା । ଶରତ କେବେ ଆସିବ ?

ଆଉ ସାତ ଆଠଦିନ ଭିତରେ । ବୋଉ ନୀରବ ରହିଲେ । ନିରୁ ସେଠାରେ ଆଉ ଠିଆ ନ ହୋଇ ଚାଲିଗଲା । ଖାତାରୁ ଖଣ୍ଡେ ଚିରି ଚିଠି ଲେଖିବାକୁ ଆରମ୍ଭ କଲା—

ଚଣ୍ଡୀଘାଟ
ତା ୨୦-୮-୩୮

ଶରତ ଭାଇ,

ମୋର ନମସ୍କାର ଗ୍ରହଣ କରିବ । ତୁମର ସ୍ନେହର ଚିଠି ଖଣ୍ଡି ପାଇଛି । ତୁମ ଉପରେ ମୁଁ ଭାରି ରାଗିଛି ଶରତଭାଇ ! ମୋ ପାଖକୁ କାହିଁକି ଚିଠି ଦେଲ ? ମୁଁ ତୁମର କିଏ କି ? ଗାତ ନା ଚୂଲି । ଏତେ ଦିନ ହେଲା ଗଲଣି, ଚିଠି ଖଣ୍ଡେ ଦେବାକୁ କଣ ତୁମକୁ ବେଳ ମିଳେ ନାହିଁ । ନା ଶରତ ଭାଇ, ତୁମେ ମୋତେ ଜମାରୁ ଭଲ ପାଅନା । ନଚେତ୍ କଣ ଖଣ୍ଡେ ଚିଠି ଦିଅନ୍ତ ନାହିଁ ? ହଁ କାହିଁକି ବା ଦେବ, ତୁମର ସେଠି କେଉଁ କଥା ଊଣା କି ? ସେଠିତ ମୋ ପରି କେହି ଅସୁନ୍ଦରୀ ନାହାନ୍ତି ? ଦିନ ରାତି ଦେଖିବାକୁ ଦିଉଡୁଥିବ । ମୋ ପାଖକୁ ଚିଠି ଦେବାକୁ ବେଳ କାହିଁ ? ରାଗରେ ଚିଠି ଦେବାକୁ ମନ ହେଉ-ନଥିଲା, ତୁମେ କି ମନ୍ତ୍ର ଜାଣ କେଜାଣି, ତୁମ ଚିଠିଖଣ୍ଡି ପଢି ମୋର କେତେ ଦିନର ପର୍ବତ ପରି ଗଦା ହୋଇଥିବା ରାଗ ଅଭିମାନ ସେହି ମୁହୂର୍ତ୍ତିରେ କୁଆଡେ ଉଡିଗଲା । ମୁଁ ଆଜି ଚିଠି ଦେଲି— ଆଠଦିନ ମଧ୍ୟରେ ଯଦି ତୁମେ ନ ଆସ, ତାହାହେଲେ ମୁଁ ଆଉ କେବେ ତୁମ ପାଖକୁ ଚିଠି ଦେବନାହିଁ କି କଥା କହିବି ନାହିଁ । ତୁମେ ସେଠି ରହି ଭାରି ଚଗଲା ହୋଇଗଲଣି । ଚିଠିରେ କଣ ଲେଖିଛ ? ମୁଁ ତାର କି ଉତ୍ତର ଦେବି ? ମୁଁ ତୁମକୁ ଦିନ ରାତି ଭାବୁଛି କି ନାହିଁ ତୁମେ କେମିତି ଜାଣିବ ? ଲେଖିଛ—ମୁଁ କେଉଁଠିକି ଏ ହୋଇ ଯାଉଛି ବୋଲି, ତୁମେ କଣ ଗ୍ଲେଠିଆ ହୋଇଛ କି ? ଗାଳି ଦେଇ ଚିଠି ଲେଖିଛି ବୋଲି ରାଗିବ ନାହିଁ, ମୋ ରାଣ । ବୋଉ, ବାପା ତୁମକୁ ଆଶୀର୍ବାଦ ଜଣାଇଛନ୍ତି । ଆସିଲେ ନିଶ୍ଚୟ ଭୁବନେଶ୍ୱର

ଯିବା । ମୋ ପାଇଁ ଦୁଇ ଡଜନଟା ଫୁଲ ଆଣିବ । ଚିଠି ଖଣ୍ଡ ପଢି କାହାକୁ ଦେଖାଇବ ନାହିଁ । ମୋତେ ଭାରି ଲଜ ମାଡୁଛି । ବଦାମ୍ଭ ଚନଲ, ବଗିବ ନାହିଁ ।

ଭ୍ରମର

'ନାରୁ'

ନାରୁ ଚିଠିଖଣ୍ଡ ପୁଣି ଥରେ ପଢିଲା । ହାତରେ ଚିଠିଖଣ୍ଡ ଧରି ବାରି ଅଡ଼କୁ ଗଲା । ମଲ୍ଲୀ ଗଛରୁ ଦୁଇ ଡଜନଟା ଫୁଲ ତୋଳି ସେ ଚିଠି ଭିତରେ ପୂରାଇ ଲଫାପାଟି ବନ୍ଦ କରିଦେଲା । ସେ ରାତିଟାଯାକ ନିଦ୍ରକୁ ଅଉ ନିଦ ନାହିଁ । ଆଉ ଅଠଦିନ ପରେ ଶରତ ଭାଇ ଆସିବ । ପ୍ରଥମ ଦେଖାରେ ଶରତ ତାକୁ କଣ କହିବ, ସେ ପୁଣି କଣ କହିବ ଏଇ ଭାବନାରେ ତା ମନ ନାଚି ଉଠୁଥାଏ ।

× × × ×

ଅଠଦିନ ପରେ ପୁଣି ଗୋଟିଏ ଗୋଧୂଳି ସନ୍ଧ୍ୟା । ସେଦିନ ରଘୁ ମିଶ୍ରଙ୍କ ଝିଅ ସାବି ପୁଅଣି ହୋଇ ଯାଉଥାଏ ବୋଲି ସାରାଗାଁଯାକ ଚହଳ ପଡି ଯାଇଥାଏ । ଗାଁ ଗୋଠାକର ଖାଉଡ଼େ ଝିଅ ପାଇଁ ତାଙ୍କର ଘରେ ଭୁଣ୍ଡ । ସାବିଟି ଭାରି ସୁନ୍ଦର ଅଉ ମେଳାପି । ସେଇଥିପାଇଁ ସବୁ ଝିଅଙ୍କ ଆଖିରେ ଲୁହ । ସାବି କାନ୍ଦି କାନ୍ଦି ହାଲିଆ । ତାକୁ ଆଜି କେତେଦିନର ପରିଚିତ ପୋଖରୀ ତୁଠ, ସାଥି ଭଉଣୀଙ୍କ ମେଳ, ପିଲାଟି ଦିନରୁ ଅତି ସାଥି ବଉଳ ମୂଳକୁ ବି ଛାଡିପିବାକୁ ହେବ । ତା' ଦୁଃଖରେ ଯେମିତି ସମସ୍ତେ ଦୁଃଖୀ । ସାବି ଅଜ ସାଥି ଛାଡି ଯାଉଛି, ଏଥିପାଇଁ ବଉଳଗଛ କାନ୍ଦୁଛି—ଅଜସ୍ର ବଉଳଫୁଲିଆ ଲୁହ ଢ଼ାଳି । କହିଁପୋଖରୀ ତାକୁ କାଲିଠାରୁ ଦେଖିବ ନାହିଁ ବୋଲି ଦୁଃଖରେ

ମୁଣ୍ଡ କଚୁଡ଼ି କାନ୍ଦୁଛନ୍ତି—ସାବ, ତୁ ଯାଆନା, ମୁଁ ଆଉ ଦେହ ଧରି ଏଠି ରହିପାରିବି ନାହିଁ । ଗଛ ପ୍ରତରେ ବି ମର୍ମର ସ୍ୱରରେ କାନ୍ଦ କହୁଛନ୍ତି—ଆମେ କାଲିଠାରୁ ଅନ୍ଧ ହେବୁ ଲୋ ! ତୋ ରୂପ ଆଉ ଆଖିରେ ପଡ଼ିବ ନାହିଁ । ଏ ତ ଗଲା ଗଛ ପତରଙ୍କ କଥା, ତା ଅନ୍ତରର ସାଙ୍ଗ ଶଇଲ, କୁମି, ଇନ୍ଦ, ଅଗଣି, ସୌରି ଗୌସ୍ୱରି ବି ମନର ଅବସ୍ଥା କହିଲେ ନ ସରେ । ସମସ୍ତଙ୍କ ଆଖିରେ ଲୁହ । ମୁହଁ ସବୁରି ଶୁଖି ଝାଉଁଳି ପଡ଼ୁଛି । ସାବର ଆଜି ଯେଉଁ ଅବସ୍ଥା, ସମସ୍ତଙ୍କର ଯେ ଦିନେ ସେଇ ଅବସ୍ଥା ହେବ, ସେଇକଥା ଭାବି ସବୁରି ମନ ମଉଳି ଯାଇଛି । କିନ୍ତୁ ନିରୁ, ତା ଦୁଃଖରେ ଦୁଃଖି ହେଲେ ସୁଦ୍ଧା ତା ଅନ୍ତରରେ ଆନନ୍ଦର ଢେଉ ଖେଳୁଛି । ଶରତଭାଇ ଆଜି ଆସିବ ।

ସନ୍ଧ୍ୟା ହେଲା । ରଘୁ ମିଶ୍ରଙ୍କ ଦୁଆରେ ଶଙ୍ଖ ବାଜି ଉଠିଲା । ଗଉଡ଼ ସବାରି ଉଠାଇଲେ । ସାବର ସେ ସମ୍ମୁଖର କରୁଣ କାନ୍ଦରେ ଗଛ ପତର ବି ତରଳିଯିବ । ଯିଏ ଯାହା ଆଖିରେ ଲୁହ ଦେଇ ଏକ ନୟନରେ ଅନାଇଁଥାନ୍ତି । ଗଉଡ଼ ଗୁଡ଼ାକ କିଛି ନ ମାନି ସବାରି ଉଠାଇ ଗହିର ମଝିଦେଇ ସିଧା ସଳଖିଲେ ମାଳପୁର ।

ନିରୁ ପିଣ୍ଡା ଖୁଣ୍ଟକୁ ଧରି ବାଟକୁ ଅନାଇ ଥାଏ । କେତେ-ବେଳେ ଶରତଭାଇ ଆସିବ, ଏଇ ଆଶାରେ ତା ମନ ଛଟପଟ ହେଉ-ଥାଏ । ଗୋଟାଏ ଆଲୁଅ ଦେଖିଲେ ନିରୁ ଭାବେ ଏଇ ନିଶ୍ଚୟ ଶରତ ଭାଇ, କିନ୍ତୁ କିଏ ଜଣେ ଲୋକ ସେଇ ବାଟ ଧରି ଗ୍ଲଲିଥାଏ, ସେ ଶରତଭାଇ ନୁହେଁ ।

ସଞ୍ଜ ଥୁଆ ପହର ଗଡ଼ିଲା । ତା'ପରେ ଦୂରରେ ଗୋଟିଏ ସଫା ଆଲୁଅ ଦେଖାଗଲା, ବୋଧହୁଏ ଟର୍ଚ୍ଚ ଆଲୁଅ । ନିରୁର ଛାତିଟା

ଆନନ୍ଦରେ ଉଠୁଥାଏ ପଡୁଥାଏ । ସେ ଭାବୁଥାଏ—ଏ ନିଶ୍ଚୟ ଶରତ ଭାଇ । ଆଲୁଅ ଆଉ ଟିକିଏ ପାଖକୁ ଆସିଲା । ଦୁଇଜଣ ଲୋକ ବାର ହୋଇ ଗଲେ । ଜଣେ ବାବୁ, ଅନ୍ୟ ଜଣେ ବୋହିଆ ବୋଧହୁଏ । ଆଉର ଟିକିଏ ନିକଟ ହେଲାରୁ ନିରୁର ଆଉ କିଛି ସନ୍ଦେହ ରହିଲା ନାହିଁ । ସେ ନିଶ୍ଚୟ ଶରତ ଭାଇ । ଘର ଭିତରକୁ ପଶିଯାଇ ଝରକା ବାଟେ ଅନାଇଁଥାଏ । ଦୁଇଜଣ ଲୋକ ତାଙ୍କର ଦୁଆର ମୁହଁରେ ଅଟକିଲେ । ଶରତ କହିଲା—ତୁ ଏଠି ଠିଆ ହ, ମୁଁ ଆସୁଚି । ହାତରେ କଣ ଧରି ଘର ଭିତରକୁ ଆସିଲେ । ମା ସେତେବେଳକୁ ପିଣ୍ଡାରେ କିଛି କାମ କରୁଥାନ୍ତି । ଶରତ ନଇଁପଡି ଦଣ୍ଡବତ କରି କହିଲା—ମାଉସୀ, ସବୁ ଭଲତ, ନିରୁ କାହିଁ ? ମା' ଉଠିପଡ଼ି କୁଣ୍ଢାଇ ପକାଇଲେ । ଆନନ୍ଦରେ ତାଙ୍କର ଆଉ ସୀମା ରହିଲା ନାହିଁ । ବାଇଆଣୀ ପରି ହୋଇ ଡ଼ାକ ପକାଇଲେ—ନିରୁ, ନିରୁ, ତୋ ଭାଇ ଆସିଲାଣି ! ନିରୁ ଲାଜରେ ଅଟେଦୀ ଆସିଲା ନାହିଁ ।

ଶରତ କହିଲା—ନିଅ ଏ ମିଠାଇ ନିରୁକୁ ଦେବ । ସେ ମୋ ପାଖକୁ ଅବା ନ ଆସୁ, ମୁଁ କାଲି ସକାଳେ ଆସେ । ତା ମଜା ବୁଝିବି ଯେ !

ନିରୁର ଆନନ୍ଦରେ, ଗର୍ବରେ ଛାତି ଫୁଲି ଉଠୁଥାଏ । ମନ ହେଉଥାଏ ଲାଜ ନ କରି ଦଉଡ଼ି ଯାଇ ତାଙ୍କୁ ଖୁବ୍ ଜୋରରେ କୁଣ୍ଢାଇ ପକାଇ କହନ୍ତା—ଶରତ ଭାଇ, ତୁମେ ଏତେ ଦିନଯାଏ କେଉଁଠି ଥିଲ ? କିନ୍ତୁ କାହିଁକି ଦଉଡି ଆସିବାକୁ ତା ପାଦ ଆଗକୁ ପଡ଼ିଲା ନାହିଁ । କଥା କହିବାକୁ ତୁଣ୍ଡ ଫିଟିଲା ନାହିଁ । ସେଇ ଘର ଭିତରେ ଚୁପ୍ ହୋଇ ଠିଆ ହୋଇଥାଏ ।

ଶରତ ଆଲୁଅ ମାରି ଗ୍ଳଲିଗଲା । ନିରୁ ଝରକା ପାଖରେ ଅନାଇ ଥାଏ । ଆଜି ଶରତର ଗୋରା ତକତକ ଗୋଡ଼ ଉପରେ ପୁଣି ଈଷ-ଧଳିଆ ଲୁଗା ନିରୁକୁ ଅଧିକ ସୁନ୍ଦର ଦେଖା ଯାଉଥାଏ ।

ବୋଉ ପୁଣି ଡ଼ାକି କହିଲେ—ଏଁ ବୁଢ଼ି ଶିଖୁଛି, ଏତେ ଡ଼ାକି-ଗଲି । ତା ପାଖରେ ତୋର ଲାଜ କଣ ଲୋ !

× × × ×

ତହିଁ ଆର ଦିନ—

—ମାଉସୀ, ଭୁବନେଶ୍ୱର ଯିବା ନା ? କାଲି ସୋମବାର । ଆଜି ରାତିରୁ ବାହାରି ଗଲେ ଭାରି ସୁବିଧା ହୁଅନ୍ତା । ବଳଦ ଗାଡ଼ିଟା ଠିକ୍ କରିଛି, କଣ କହୁଛ ମାଉସୀ ?

—ନିରୁବୋଉ ଟିକିଏ ରହିଯାଇ କହିଲେ—ବଇଶାଖ ମାସ ସୋମବାର ପରି ଆଉ ଭଲ ଦିନ କ'ଣ ଅଛି ? ମଉସା ତୋର ଆସନ୍ତୁ । ପଇସା ପଇ କଥା କଣ କହୁଛନ୍ତି ।

—ନା ମାଉସୀ, ପଇସାପଇ କଥା ତୁମେ କିଛି ଧରିବ ନାହିଁ । ତାହାହେଲେ ତୁମେ ମୋତେ ପର କରି ଦେଉଛ—ନୁହେଁ ?

—ନିରୁବୋଉ ହସି ହସି କହିଲେ—ପାଗଳା ପୁଅଟା, ତୋ ଇଚ୍ଛା ଯାହା ତୁ କର ।

—ମାଉସୀ, ନିରୁ କୁଆଡ଼େ ଗଲା ?

—ଗ୍ଲେପରି ହେଉଛି ସେ, ଦେଖେ ସେହି ଘରେ କଣ କରୁଥିବ ।

ନିରୁ ନାଲିଧଡ଼ିଆ ଲୁଗା ଖଣ୍ଡିଏ ପିନ୍ଧି ଦୁଆର ମୁହଁରେ ଠିଆ ହୋଇଥାଏ । ତା' ପାଦ ଆଗକୁ ମାଡ଼ି ପଡୁଥାଏ ଶରତ ପାଖକୁ

ଦାଉଣ୍ଡ ଯିବାକୁ । କିନ୍ତୁ କାହିଁକି ଗୋଡ଼ ଆଗକୁ ପଡ଼େନା । ଲଜ୍ଜା ଆଉ ଆନନ୍ଦରେ ମନଟା ଦବି ଯାଏ !

ଶରତ ଗୋଡ଼ ଚିପି ଚିପି ଯାଇ ହଠାତ୍ ଦୁଆର ମୁହଁରେ ଠିଆ ହୋଇଗଲା । ନିରୁ ଚମକି ପଡ଼ି ପଛକୁ ଟିକିଏ ଘୁଞ୍ଚିଯାଇ ମୁହଁ ତଳକୁ ମାଡ଼ି ଠିଆ ହୋଇ ରହିଲା ।

ଶରତ ଆଉ କିଏ ଭାବି ତରତର ହୋଇ ଫେରି ପଡ଼ୁଥିଲା । ପଛରୁ କିଏ ମଧୁର କଣ୍ଠରେ ଡ଼ାକିଲା—ଶରତ ଭାଇ ?

ଶରତର ଭାବନା ବଦଳିଗଲା । ଫେରିପଡ଼ି ଦୁଆର ମୁହଁରେ ଠିଆ ହେଲା । ନିରୁ ସେମିତି ମୁହଁ ତଳକୁ ପୋତି ଠିଆ ହୋଇଥାଏ । ନିରୁର ରୂପ, ତାର ଘୋର ପରିବର୍ତ୍ତନ ଦେଖି ଶରତର କେତେ ଭାବନା କ୍ଷଣକେ ଆସି ପୁଣି କୁଆଡେ ମିଳାଇ ଯାଉଥାଏ । ଶରତର ଇଚ୍ଛା ହେଉଥାଏ—ତା ପାଖକୁ ଯାଇ ଦୁଇହାତରେ ଯାବୋଡ଼ି ଧରି ପଚାରନ୍ତା—କାହିଁକି ଲଜ୍ଜା କରୁଥିଲୁ ? କିନ୍ତୁ ଗୋଟାଏ ଅଜଣା ଭୟରେ ତାର ଗୋଡ଼ ଦୁଆରବନ୍ଧ ଡେଇଁ ଭିତରକୁ ପଡ଼ିଲା ନାହିଁ । ତା ପାଖକୁ ଯାଇ ଯାବୋଡ଼ି ଧରିବା ତ ଦୂରର କଥା ।

ଶରତ ନୀରବ—ନିରୁ ନୀରବ । ଦୁହେଁ ଦୁହିଙ୍କ ବିଷୟରେ କେତେ ଯେ କଣ ଭାବୁଥାନ୍ତି ତାର ଠିକଣା ନାହିଁ ।

ଭାବନା ଭିତରେ କୁହୁକର ଜାଲ ବୁଣା । ଯିଏ ଜାଲରେ ସେ, ତା ଜାଲରେ ଇଏ ପଡ଼ି ଛଟପଟ । ବେଳେ ବେଳେ ଜାଲଟା ଏକାଠି ଯୋଡ଼ି ହୋଇଯାଏ । ସେତିକିବେଳେ ଦୁହେଁ ଦୁହିଙ୍କ ଗୁଣ ଗାଇ ଆତ୍ମହରା ।

ଇମିତି କେତେବେଳ ବିତିଗଲା । ନିରୁ ଲୁଗା କାନିଟାକୁ ମୋଡ଼ି ମୋଡ଼ି କହିଲା—ଠିଆ ହୋଇଛ କାହିଁକି ? ଏଠିକି ଆସି ବସୁନା, ଶରତ ଭାଇ !

ଶରତ ଯନ୍ତ୍ର ଚାଳିଲା ପରି ତା ପାଖରେ ଯାଇ ବସିଲା । ଦୁହେଁ ଦୁହିଙ୍କୁ ଲଗାଲଗି ହୋଇ ବସିବାକୁ ମଝିରେ ହାତେ କି ଦ'ହାତ ତଫାତ୍ । ତଥାପି ଦୁହେଁ ଦୁହିଙ୍କର ପବନର ପରଶ ପାଇ ଥରି ଉଠିଲେ । ବଲଜାଟା ଧପ୍ ଧପ୍ ହେଲା ।

ଶରତର ପିନ୍ଧାକାନଟା ସ୍ତମ୍ଭ ଉପରେ ବିଛାଡ଼ି ହୋଇ ପଡ଼ିଥାଏ । ନିରୁ ଶରତର ପିନ୍ଧା କାନଟିକୁ ଉଠାଇ ନେଇ କୁଞ୍ଚି କରୁ କରୁ ନରମ ଗଳାରେ କହିଲା, ଭୁବନେଶ୍ୱର ଯିବାକୁ ବୋଉ କ'ଣ କହିଲା ? ଶରତର ମନରେ ଗୋଟାଏ ଭୟ ମିଶା ଆନନ୍ଦର ତୋଫାନ ଖୁବ୍ ଜୋରରେ ବହୁଥାଏ । ସେହି ପ୍ରବଳ ଝଡ଼ରେ ନିରୁ ପାଇଁ ବାଧା ବିଘ୍ନର କେତେ ବଡ଼ ବଡ଼ ଗଛ ଯେ ଭାଙ୍ଗି ଚୁରମାର ହୋଇ ଯାଇଥାଏ ତାର ଇୟତ୍ତା ନାହିଁ । ପ୍ରଥମେ ଶରତକୁ ନିରୁର କଥାଟା ସପନ ପରି ଲଗିଲା । ପରେ କଣ ଗୋଟାଏ ଶୁଣିଲା ପରି ଉତ୍ତର ଦେଲା, ମାଉସୀତ କହିଲେ— ଆଜି ଯିବାକୁ, ତୁ ଯିବୁନା ନିରୁ ?

—ନିରୁ ମୁଣ୍ଡ ହଲାଇଲା ।

ତା'ପରେ ନିରୁ ଲଜ ଲଜ ହୋଇ କେତେ କଣ ପଚାରୁଥାଏ । ଶରତ କଣ ତାକୁ ଉତ୍ତର ଦେଉଥାଏ ତାର ଖିଆଲ ନାହିଁ, ସେ ଖାଲି ମିଳାଉଥାଏ ଆଗ ନିରୁ—ଆଉ ଆଜି—କେତେ ଫରକ । ଠିକ୍ ଆକାଶ ପାତାଳ ପରି । ନିରୁ କଥା କହିଲାବେଳେ ଶରତ ଭ୍ରିଭ କରେଇ କରେଇ ଚାହୁଁଥାଏ—ନିରୁର ସେହି ଛୋଟ ଛୋଟ ଫିକା ଅଲତା ଅଧରକୁ; ଉପାଣିଆ ଆଖି ଦୁଇଟି, ଆଉ ନାଲି ଟୁହୁ ଟୁହୁ ଗାଲ ଦୁଇଟିକୁ । ସେ ନିରୁକୁ କେତେ ସିନେମା ଛବି ସାଙ୍ଗରେ ତୁଳନା କଲା, ହେଲେ ତ ନାହିଁ ! ଦେଖା ସାଙ୍ଗରେ—ନା, ତାଙ୍କ ପରି ବି ନୁହେଁ । ଦୁନିଆରେ ସବୁଠାରୁ ବେଶି ସୁନ୍ଦର ନିରୁ । ବେଳେ ବେଳେ

ନିରୁ ଏପାଖ ସେପାଖ ହେଲେ, ତାର ଉନ୍ନତ ବକ୍ଷ ଦୁଇଟି ଶରତର ଆଖିରେ ପଡ଼େ । ଶରତ ଆତ୍ମହରା ହୋଇ ନିଜକୁ ନିଜେ ଭୁଲିଯାଏ । ମନହୁଏ ନିରୁକୁ ଧରି ପକାଇ ବଡ଼ ଆଦରରେ ପଚ୍ଛରନ୍ତା—ନିରୁ ନିରୁ, ଏ କଣ ତୋର ! କିନ୍ତୁ ଜାଉ ପାଇଟେ ନାହିଁ ।

କେତେ ସମୟ ଇମିତ କଟିଲା । ନିରୁ ମଧ୍ୟ ଶରତକୁ କଣେଇ ଅନାଉଥାଏ । ଶରତର ରୂପ ଦେଖି ତାର ଗ୍ରନ୍ଥ ଉଲ୍ଲସି ଉଠୁଥାଏ । ମନ ହଉଥାଏ ପଚ୍ଛରନ୍ତା—ଶରତଭାଇ ଚିହ୍ନି ପାରୁନା ? ତୁମ ପାଇଁ କେତେ କଷ୍ଟରେ—

କଳ୍ପନାର ସମୟ କଳ୍ପନାରେ କଟିଲା ଅନେକକ୍ଷଣ । ନିରୁ ଶରତର ଭାବ ଭଙ୍ଗି ଦେଖି ସବୁକଥା ବେଶ୍ ବୁଝି ସାରିଲାଣି । ଶରତ ମନରୁ ସେ ଭୟ ଧାରଣାଟା କମାଇ ଦେବା ପାଇଁ ହସି ହସି କହିଲା, ଶରତ ଭାଇ, ଇମିତ କାହିଁକି ପାଗଳଙ୍କ ପରି ହଉଛ ! ମୋ ଆଡ଼କୁ ଏତେ ଗୁହୁଁ ଛ କାହିଁକି ? ମତେ ଡର ମାଡୁଛି, ଆଗ କଥା ତୁମର କୁଆଡ଼େ ଗଲା ?

ଶରତ ଏତେଗୁଡ଼ାଏ କଥାର କି ଉତ୍ତର ଦେବ ! ସେ ବିଚଳିତ ହୋଇ ନିରୁର ହାତଟିକୁ ଆଣି ନିଜ ହାତ ଭିତରେ ରଖିଲା । ଇମିତ ପରଶଟି ସେ କେବେ କେଉଁଠୁ ପାଇନାହିଁ । ଆଜକୁ ଦୁ'ବର୍ଷ ତଳେ କେତେ ସେ ନିରୁକୁ କୋଡ଼ରେ ବସାଇଛି, ସେତେବେଳେ ତ ଏ ପରଶ ତାର ନ ଥିଲା । ବିଜୁଳିର ପରଶ, ନା ତା'ଠାରୁ ଅଧିକ କିଛି ଗୋଟାଏ ବଡ଼ ପରଶ ପାଇଲାପରି ତା ଦେହଟା ଥରି ଉଠିଲା ।

ନିରୁ ଶରତର ମୁଖ ଭଙ୍ଗି ଦେଖି ମୁରୁକି ମୁରୁକି ହସୁଥାଏ । ସେ ମନେ ମନେ ଠିକ୍ କଲା— ଶରତ ପାଖରେ ତାର ଗୋଟାଏ ଲାଜ

କଣ ! ଫାଶକୁ ଲଗି ଅସି କହିଲା—ଶରତଭାଇ, କଣ ଭାବୁଛ ? ଶରତର ଇଚ୍ଛା ଥାଏ, ତାକୁ ଛାତିରେ ଚାପିଧରି ଟେଲ କରି ଦଅନ୍ତା, କିନ୍ତୁ ହାତଟା ଉଠିଲା ନାହିଁ—ମନଟା ଦବିଗଲା । ଶରତ ଅଡ଼ କଣ୍ଠି ନ କହି ଠିଆ ହୋଇ କହିଲା—ନରୁ, ମୁଁ ଯାଉଛି—ଏଁ, ରାତିରେ ଭୁବନେଶ୍ୱର ଯିବା ।

ନରୁ ଦୁଷ୍ଟାମୀ ହସ ହସି କହିଲା—ଥରେତ କହିଲ ଯିବାକୁ, କେତେଥର ପଚାରୁଛ ! ମୋର ତ କେଦାରଗୌରୀ ଦେଖିବାକୁ ଭାରି ଇଚ୍ଛା ।

ଶରତ ହସି ଦେଇ କହିଲା— ସତେ !

X X X X

ଖଣ୍ଡିଆ ଖାବଡ଼ା ଧୂଳି ରାସ୍ତା । କେତେ ଆଙ୍କ ବାଙ୍କ ଧରି କେତେ ଶାଖା ପ୍ରଶାଖା ମେଲି କୁଆଡ଼େ ଯେ ଶେଷ ହୋଇଛି ତାର ଠିକ୍ ନାହିଁ । ତା'ର ଦେହରୁ ଗୋଟିଏ ଶାଖା ବଙ୍କା ସଳଖ ହୋଇ ପଳାଉଛି ଭୁବନେଶ୍ୱର । ରାମ ଭୋଇ ମୁଣ୍ଡରେ ଗାମୁଛା ଖଣ୍ଡିଏ ପଚାଇ ବଳଦ ଲାଙ୍ଗୁଡ଼ରେ ହାତମାରି ରାଗିଣୀ ଛାଡ଼ୁଛି—

ରାମ ଲକ୍ଷ୍ମଣ ବେନି ଭାଇଟିରେ
ବନେ ଗଲେ ମୃଗ ମାରି—
ସୀତା ରହିଥିଲା ଏକାକୀ କୁଟୀରେ
ରାବଣ ତ ନେଲା ହରି ରେ—ଏ ।

ଟିକିଏ ଗଲା । ବଳଦ ଲାଙ୍ଗୁଡ଼ରେ ହାତ ମାରୁ ମାରୁ ପୁଣି ଗାଇଲା—

ପୋହଳା ମାଳ ଦ' ସରି
ପୋହଳା ମାଳ ଦ ସରି
କୁନ ମା' ଯଦ ଜୀବନେ ଥାଆନ୍ତା
ଅସିଥାନ୍ତା ଦେଖି ହରଗଉରୀ—ରେ—ଏ

ଏ ପଦକ ଗାଇଲାବେଳେ ତା କଣ୍ଠ ଦରଦ ହୋଇ ଉଠୁଥାଏ । ଯେମିତି କେତେ ଦିନର ଦୁଃଖ ଏହି ପଦକରେ ତାର ବାହାରି ପଡୁଛି । କିଏ ଜାଣେ ତା ମନରେ କେତେ ଦୁଃଖ, କେତେ କଷ୍ଟ । ସମସ୍ତଙ୍କ ମନରେ କିଛି ନା କିଛି ଦୁଃଖ ରହିବାହିଁ ବୋଧହୁଏ ବିଶ୍ବର ନିୟମ ।

ଡ଼ାଆଣିଆ ଖରା ତାଳଗଛ ମଥା ଉପରକୁ ଉଠିଲା ବେଳାକୁ ଗାଡ଼ଖଣ୍ଡ ଯାଇ ଭୁବନେଶ୍ବରରେ ପହଞ୍ଚିଲା । ଧର୍ମଶାଳାରେ ସମସ୍ତେ ରହିଲେ । ନିରୁ ବାପା ତା ବୋଉ, ନିରୁ, ଶରତ ମୁହଁ ହାତ ଧୋଇ ଜଳଖିଆ ଖାଇ ସାରିଲା ବେଳକୁ ଦେଉଳରେ ଘଣ୍ଟା ବାଜି ଉଠିଲା । ସମସ୍ତେ ତରତର ହୋଇ ଦର୍ଶନକୁ ବାହାରିଗଲେ । ନିରୁବୋଉ ଲୁଗାକାନି ଓଲଟାଇ ବେକରେ ପକାଇ ଦାଣ୍ଡ ପାଖରେ ମୁଣ୍ଡ ଲଗାଇଲେ । ବାପା ଆଖି ବୁଜି ଠିଆ ହୋଇଥାନ୍ତି । ନିରୁ ଆଉ ଶରତ, ଦୁହିଙ୍କ ଆଖିରେ ଲୁହ ଛଳ ଛଳ । ଲିଙ୍ଗରାଜଙ୍କ ଉପରେ ଦୁହିଙ୍କର ଆଖି । ବେଳେ ବେଳେ ନିରୁ ଶରତକୁ ଟିକିଏ ଅନାଇ ହସିଦିଏ, ଶରତ ମୁଣ୍ଡ ତଳକୁ ପୋତିଦିଏ ।

ଦର୍ଶନ କରି ସେଦିନ ସମସ୍ତେ ଫେରିଲେ ।

ତହିଁ ଆରଦିନ ଉପର ବେଳା । ନିରୁ ବାପା ଓ ବୋଉ ଦେଉଳ ଗୁରି ପାଖରେ ବୁଲି ଗଣେଶ ମନ୍ଦିର ପାଖରେ ବସି ଅଷ୍ଟଶମ୍ଭୁ ଗପରେ ରତ । ନିରୁ ଦେଉଳରେ ଅଙ୍କା ହୋଇଥିବା ଚିତ୍ର ଗୁଡ଼ିକ ତନ୍ନ ତନ୍ନ କରି ବୁଲି ଦେଖୁଥାଏ । ଶରତ ଧର୍ମଶାଳାରୁ ପଞ୍ଜାବୀଟା ପିନ୍ଧି ଆସି କହିଲା—ନିରୁ ଆ—କେଦାରଗୌରୀ ଦେଖିଯିବା । ନିରୁ ଟିକିଏ ଏପାଖ ସେପାଖକୁ ଅନାଇଲା—କାଳେ ମା' କ'ଣ ଭାବିବେ । ଶରତ

ପୁଣି ଥରେ ଡ଼ାକିଲା । ବୋଉ କହିଲେ—କଲୋ, ତୋ କାନରେ ପଥର ପଡ଼ିଲାଣି କି ! ଯାଉନୁ ଦେଖିଣା।

ନିରୁ ଲାଜ ଲାଜ ହୋଇ ପଛେ ପଛେ ଗୃଲିଲା ।

ଆଗରେ କେଦାରଗୌରୀ ମନ୍ଦିର । ପାଖରେ ଗୋଟିଏ ଛୋଟ ଝରଣା । ଶରତ ନିରୁର ହାତକୁ ଚିପିଦେଇ କହିଲା—କେଦାରଗୌରୀ କଥା ଜାଣିଛୁ ନିରୁ ?

ନିରୁ କହିଲା—ହଁ, ମୁଁ ଭଲକରି ଜାଣିଛି ଯେ—

—ଅଚ୍ଛା, ଗୌରୀ କେଦାରକୁ ଯେମିତି ଭଲ ପାଉଥିଲା, ତୁ ମତେ ସେମିତି ଭଲ ପାଉ ?

ନିରୁ କିଛି କହିଲାନି, ମୁଣ୍ଡ ଝୁଙ୍ଗାଇଲା ।

ଶରତର ଆନନ୍ଦରେ ଛାତିଟା ପୂରି ଉଠୁଥାଏ । ନିରୁକୁ ହଲାଇ ପକାଇ କହିଲା—ନିରୁ, ଏଠି ଯେମିତି କେଦାରଗୌରୀ ମନ୍ଦିର ହୋଇଛି, ଆମେ ମଲେ ସେମିତି ଏଠି 'ଶରତ-ନିରୁ' ମନ୍ଦିର ହେଲେ ଭଲ ହୁଅନ୍ତା, ନୁହେଁ ? ନିରୁ ରଚିଯାଇ ଶରତର ହାତକୁ ଛିଞ୍ଚାଡ଼ି ଦେଇ କହିଲା—ସେ "କାଳ" କଥାଗୁଡ଼ା ମୋ ଆଗରେ କହିବ ନାହିଁ, ଯା ।

ଶରତ ତାକୁ ଆଦର କରି କହିଲା—ନା ଲୋ, ମୁଁ ସେମିତି ଗେଲରେ କହିଲି ନା—ଆ, ସେ ପଥର ଉପରେ ବସିବା ।

ପିଲାଦିନର ଲଗାଲଗି ହୋଇ ବସିବା—ଆଉ ଆଜି ଲଗାଲଗି ହୋଇ ବସିବା କେତେ ଫରକ—କେଡ଼େ ରହସ୍ୟ । ଶରତର ହାତ ମୁଠା ଭିତରେ ନିରୁର ପାପୁଲିଟି ଥରୁଥାଏ ।

ସୂର୍ଯ୍ୟଦେବ ଆଉ ଅଳ୍ପସମୟ ପରେ ଧରାରୁ ବିଦାୟ ନେବେ ବୋଲି ଦୁନିଆଁଟା ଯାକ ଚହଲ ପଡ଼ି ଯାଇଥାଏ । ଖଣ୍ଡ ବଉଦ ପଶ୍ଚିମ ଆକାଶରେ ନାଲି ନେଳି ଗାଲିଚା ପାରି, ସୁନା ଝରରେ ପାଣି ଆଣିବା ପାଇଁ ଦଉଡ଼ୁଥାନ୍ତି । ପବନଟା କେଉଁଠି ଶୋଇ ପଡ଼ିଥିଲା କି କ'ଣ, ନିଦବାଉଳାରେ ତରତର ହୋଇ ଫୁଲ ବାସନା ଧରି କଲବଲ ହୋଇ ଦଉଡ଼ୁଥାଏ ସେଇଆଡ଼କୁ । ଆକାଶରେ କେତେ ଜାତିକା ପକ୍ଷୀ ବିଦାୟ-ସଙ୍ଗୀତ ଗାଇବା ପାଇଁ ଉଡ଼ାଉଡ଼ି ହେଉଥାଆନ୍ତି ।

ଦୁହେଁଯାକ କେତେ କଣ ଗପସପ ହେଉ ହେଉ ଶରତ ଡାକିଲା—ନିରୁ ? ଶରତର ଦେହଟା ଥରୁଥାଏ ।

ନିରୁ ଥରି ଥରି କହିଲା—ଉଁ ।

ଆଉ କାହା ପାଟିରେ କଥା ନାହିଁ ।

ସୂର୍ଯ୍ୟଦେବ ଦୁନିଆର ଉତ୍ସବ ସାରି, ପାହାଡ଼ ଉହାଡ଼କୁ ଢଳି ପଡ଼ିଲେ । ଶରତ ଗୋଟାଏ ଯନ୍ତ୍ର ପରି ନିରୁକୁ ଛାତି ଉପରକୁ ଆଉଜେଇ ଆଣି ଖୁବ୍ ଜୋରରେ ଚାପି ଧରିଲା । ନିରୁର ଆନନ୍ଦ ଆଉ ଉତ୍ତେଜନାରେ ଆଖି ଦୋ'ଟି ବୁଜିଗଲା । ଦେହ ଶିତେଇ ଉଠିଲା ।

ତା'ପରେ—ତା'ପରେ—ଯୋଡ଼ାଏ ଗରମ ଥର ଥର ଓଠ ଭିତରେ ଆଉ ଯୋଡ଼ାଏ ଓଷ୍ଠ ଗୋଲାପି ଓଠ ମୁଦିଗଲା ।

ଦୁନିଆର ଝାପ୍ସା କଳା ପରଦା ପଡ଼ିଲା । ଉଚ୍ଛଳ ଯୌବନର ଅଜଣା ପରଦା ଉପରକୁ ଉଠିଗଲା । ହୃଦୟ ହୃଦୟରେ ମିଶିଗଲା ।

   

ତହୁଁ ଅବଦାନ ସମସ୍ତେ ଘରକୁ ଫେରିଲେ ।

ସେତେବେଳେ ପଧାନ ମାଇପ ଗଡ଼ିଆ ତୁଠରେ ବାଲିମୁଠା ପକାଇ ତା ପିତ୍ତଳ ଗଡୁ ମାଜୁ ମାଜୁ ଆଗ ପଛକୁ ଦେଖିକରି ଅନାଇଁ କହିଲା, ଶୁଣିଲଣି ନଫୁର ବୋଉ, ଛି ଛି, କାଳ ଫେର ଇମିତି ହେଲା ! କେଉଁଠି କିଛି କହିବ ନାହିଁ ଗୋ ! ଯିଏ ଯିମିତି କରୁଛି ତାର ଫଳ ସେ ସେମିତି ପାଇବ । ଆମର ଯାଏ କେତେ ଆସେ କେତେ ।

ନଫୁର ବୋଉ ଗୋଡ଼ ଘସା ବନ୍ଦ କରି ତା ନାଲିଆ ଦାନ୍ତକୁ ନିକୁଟି ଅବାକାବା ହୋଇ କହିଲା—କ'ଣ କହେ, କହ ଅଧା କଲ, କାହିଁକି ମ ସଇ !

—ମଲା, ତମେ କ'ଣ ଅଜଣା ଘର ଗୁଜୁଳର ଭାତ ଖାଉଛ ନା କ'ଣ ମ ! ଏତେ କଥା ଘଟୁଛି, ତମ କାନରେ ଟିକିଏ ସୁଦ୍ଧା ପଶି ନାହିଁ । ମଲା ମ ଅଲଅଲ ! ଏଇ ଯେଉଁ ମାଷ୍ଟର ଝିଅ ନିରୁ, ତମ୍ଭାତାର ପର ଟୋକା ଖଣ୍ଡେ, ତାର ଫେର ଏତେ ଗୁଣ ! ଚୁପସଇତାନ ଭାର ଖଣ୍ଡେ ଏକା । ଗାଁ ଗୋଟାକରେ ଖାଉଡ଼େ ଝିଅ, ତା'ପର ଗୋଟାଏ କିଏ ? ଜମିଦାରଙ୍କ ପୁଅ ଶରତ ସାଙ୍ଗରେ ପରା ଦିନରାତି ଅଣ୍ଟୁନାହିଁ, ଦେଖୁନା କାଲି ପରା ଭୁବନେଶ୍ୱର ଯାଇଥିଲେ । ଯିଏ ବେଶ୍ୟାଗିରି କରିବ ତାର ଲାଜ କ'ଣ ମ ! ବାପ ମା' ତ ସେମିତି, ନଇଲେ ବାଘ ଘରେ ମିରିଗ ନାଟ ହୁଅନ୍ତା ପୁଣି ।

ପାଖରେ ସଦା ମାହାନ୍ତି ମାଇପ ପାଚିଆଟାରେ ଶାଗ ଧୋଉଁ ଧୋଉଁ ଆଖି ତରାଟି କହିଲା—କ'ଣ କହୁଛ ବଉଳ ! ଚୁପସଇତାନର ଏତେ ଗୁଣ ! ଏଇଥିପାଇଁ ଭଲ ବୋଲି ଗାଁ ଯାକ ହୁରି ପଡ଼ୁଛି ! ଧରମ ନ ସହୁ ଇମିତି କଥା ।

ଚେମା ମାଇପ ଅଳ୍ପର ଟିକିଏ ପାଖକୁ ଘୁଞ୍ଚିପଡ଼ି ତା' କାନ ପାଖରେ ଫୁସୁରୁ ଫାସୁରୁ କରି କହିଲା—ମଲା, ସେଦିନ ପରା ଦୁମ୍ବଦୁମା ଖରାବେଳଟାରେ ନିଜ ଆଖିରେ......। ଛି ଛି ! ନିଜ ଆଖିକୁ ପରତେ ଯିବ ନାହିଁ ତ, ଆଉ କାହା କଥାକୁ ପରତେ ଯିବ ପୁଣି ?

ଏ ତ ଗଲା ପୋଖରୀ ତୁଠ କଥା ।

ସନ୍ଧ୍ୟା ଗଡ଼ି ଗଲାଣି । ଶ୍ୟାମ ମିଶ୍ରଙ୍କ ଦାଣ୍ଡ ପିଣ୍ଡାରେ ଚାରି ପାଞ୍ଚ ଜଣ ବୁଢ଼ା ବସି ଗପସପ ହେଉଥାନ୍ତି । ହରି ମିଶ୍ରେ ଚାଲିମଠାକୁ ଖୁବ୍ ଦମେ ଟାଣି ନେଇ ସଦା ମହାନ୍ତି ହାତକୁ ଦେଇ ଦେଇ କହିଲେ, ଶୁଣିଲଣି ହେ—ସଦା ଭାଇ ! ଏ କଳିକାଳରେ ଆଉ ଏ ଗାଁରେ ରହି ହେବନାହିଁ, ଘୋର ଅତ୍ୟାଚାର, ଏ ଯୁଗରେ ପୁଣି ଏ ସବୁ ବେହିଆ କଥା ମଣିଷ ଶୁଣିଲା । ଛି ଛି ଏଇ ମାଷ୍ଟର ଝିଅଟା ହେ। । ଗାଁର ନାଆଁ ପାଣି ପକାଇଲା । କେଉଁ ପାଠକରେ ଇମିତ ନାହିଁ । ମହାନ୍ତି ଘରେ କେଉଁଠି ବଢିଲା ଝିଅ ସାଙ୍ଗରେ ଭେଣ୍ଡିଆ ଟୋକାଟା ଏକାଠି ରାତି ରାତି କଟାଉଛନ୍ତି, ଭୁବନେଶ୍ବର ଯାଉଛନ୍ତି । ନାଁଆ ପାଖରେ ଝିଅ ନ ତରଳି କ'ଣ ରହେ ।

ସଦା ମହାନ୍ତି ଦମେଇ ପୁହାଣି ହାତକୁ ବଢ଼ାଇ ଦେଇ କହିଲା, ମିଶ୍ରେ ଯାହା କହନ୍ତି ଖାଣ୍ଟି କଥା । ଏ କଥା କ'ଣ ମିଛ । ଆମ ଘର ମଣିଷ ତ ତ'ଆଖିରେ ଦେଖିଛି ବୋଲି କାଲି ରାତିରେ କହୁଥିଲା । ସବୁ କଥା ତ ହାଟରେ ପଡ଼ି ବାଟରେ ଗଡ଼ଗଡ଼େଇଲାଣି, କଣ କହୁଛ ମିଶ୍ରେ ?

—ମଲା, ଏଥିରେ ଆଉ ସନ୍ଦେହ ଅଛି । ଏ ପଇତାରେ ଗଣ୍ଠି ଥିବା ଯାକେ ଆଉ ମିଶ୍ର ତା' ଘରେ ପତର ପକାଉଛନ୍ତି । ଧରମ

ଛାଡ଼ି ଅଲଗା ହୋଇଯିବ । ଜମିଦାରଙ୍କୁ ସେଇକଥା ମୁଁ ଆଜି କହି ଦେଇଛନ୍ତି । ଯଦି ସେଠି ତାଙ୍କର ବିବାହ କରେଇବାର ଇଚ୍ଛା, ତାହା-ହେଲେ କରି ଦିଅନ୍ତୁ, ନହେଲେ ଗାଁ ଠାରେ ପିଲାପିଲି ନେଇ ଆଉ ବେଶ୍ୟାଗିରି କାମ ମଣିଷ କେତେଦିନ ଦେଖିବ ।

ଦନେଇ ପୁହାଣି କହି ଉଠିଲା—ତା' ସତ, ଜନା ଯାହା କହୁଛନ୍ତି ଠିକ୍ କଥା । ଜନା ନ ଥିଲେ ତ ଏ ଗାଁରୁ ଶିଘ୍ର ତୁଟି ଯାଆନ୍ତାଣି ।

ଇମିତି ଦାଣ୍ଡରୁ ଗଡ଼ଅ ତୁଠ ପର୍ଯ୍ୟନ୍ତ କେତେ କଥା ।

ଇମିତି ଥୋକେ ଥାଆନ୍ତି । ଷଣ୍ଢାଙ୍କରେ ମିଛକୁ ସତ, ସତକୁ ମିଛ କରି ସୃଷ୍ଟି କରିବାକୁ ସୁଖ ପାଆନ୍ତି । କୁଳଭୁଅସୁଣୀ ନାଁରେ ମିଛ କଥା ଉଠାଇ ଦାଣ୍ଡର ଭଙ୍ଗାଚୁଣୀ କରି ଛାଡ଼ନ୍ତି । ନ ଦେଖିଲା କଥା ନ ଶୁଣିଲା କଥା ସତ ବୋଲି ଦାଣ୍ଡ ବଜାରରେ ହାଟ ବସାଇ ପାରନ୍ତି ।

   

ଭୁବନେଶ୍ୱରରୁ ଏମାନେ ଯେଉଁଦିନ ଫେରିଲେ, ତହିଁ ଆର-ଦିନ ଉପରବେଳା । ଶରତ ହାତରେ ଖଣ୍ଡେ ଚିଠି ଧରି ଆସି କହିଲା, ମାଉସୀ, ନିରୁ ରାତି ଅନିଦ୍ରା ହୋଇ ଶୋଇଛି ନା କ'ଣ ! ମୁଁ କାଲି ସକାଳୁ କଟକ ଯିବି, ମୋର ଜଣେ ବନ୍ଧୁ ଭାରି ଜଗର କରି ଲେଖି-ଛନ୍ତି—ତାଙ୍କ ବଡ଼ ଭଉଣୀଙ୍କର ବିବାହ । ମୁଁ ନ ଗଲେ ନ ଚଳେ । ଏଇ କଥା କହି ଆର ଘରକୁ ପଶିଗଲା ବେଳକୁ ନିରୁ ନିଘୋଡ଼ ନିଦରେ ଶୋଇଛି । ଶରତ ଚପ୍ ଚୁପ୍ ଯାଇ ତା' ଗୋଡ଼ରେ ସଲସଲ୍ କଲା । ନିରୁ ଚମକି ପଡ଼ିଲା ପରି ଉଠି ବସି ପଡ଼ିଲା ।

ତା'ପରେ ଶରତ ହସି ହସି କହିଲା, ରାଣୀଙ୍କର ନିଦ ଭାଙ୍ଗିବ ନାହିଁ ନା କଣ । ଏଇ ଦେଖ, ମୋର ଜଣେ ବନ୍ଧୁ ଚିଠି ଦେଇଛନ୍ତି

ତାଙ୍କ ବଡ଼ ଭଉଣୀ ରେଖାର ଶ୍ବଶୁର ଘର, ନ ଗଲେ ନ ଚଳେ । ମୋ ପାଇଁ ମନ କଷ୍ଟ କରବୁ ନାହିଁ ଜାଣିଲୁ—ଶରତ ବଡ଼ ଆଦରରେ କହିଲା ।

ଏତିକିବେଳେ ବୋଉ ଆରଘରୁ ଡ଼ାକି କହିଲେ—ଆଜି ଗଲେ ଆଉ କେବେ ଫେରିବୁ ରେ ।

ଶରତ ନିରୁ ସାଙ୍ଗରେ କଥା ବନ୍ଦ କରି କହିଲା—ବେଶୀ ଦିନ ନୁହେଁ—ଚାରି ପାଞ୍ଚଦିନ ଲାଗିବ । ପରୀକ୍ଷା ଫଳଟା ବି ବୁଝି ଆସିବ । ଆମ ଘରେ ଯେଉଁ କାଣ୍ଡ ଘଟିଛି ଶୁଣିଲଣି ମାଉସୀ ?

ନିରୁବୋଉ ଚୁଲିଅ ଗ୍ରୀଟା ଧରି ତା' ପାଖରେ ଠିଆହୋଇ କହିଲେ, କଣ କିରେ ବାପ ?

ଶରତ ଟିକିଏ ବିଦ୍ରୂପ ହସ ହସି କହିଲା—ଏମାନଙ୍କୁ କିଏ ମଣିଷ କଲା ମାଉସୀ, ବାପା ବୋଉ ଯଦି ଅଳି କରୁଥାନ୍ତେ, ଏଇ ଦାଦା ଖୁଡ଼ୀ ପୁଣି ମୋ ମନ ଉପରେ ବାଧା ଦିଅନ୍ତେ । ମୁଁ କହିଲି—ବଡ଼ ଡାକ୍ତରୀ ପଢିବାକୁ ପାଟଣା ଯିବି । ଆଉ ଦି'ଟା ବର୍ଷ ଲାଗିବ । ବେଶୀ କିଛି ଖର୍ଚ୍ଚ ଲାଗିବ ନାହିଁ । ମୁଁ ଯେଉଁ ବନ୍ଧୁଙ୍କ ଶ୍ବଶୁର ଘରକୁ ଯାଉଛି ସେ ପାଟଣାରେ ରହନ୍ତି, ତାଙ୍କରି ଘରେ ରହିଲେ ବି ଚଳନ୍ତା । ଏଇକଥା କହିଲାରୁ ଖୁଡ଼ୀ ମୁହଁ ଫଡ଼ଫଡ଼ କରି କହିଲେ—ପଢିବାକୁ କଣ କିଏ ମନା କରୁଛି ! ଧନ ହେଲେ ତ ହୁଏ । ଦାଦା ବି କହିଲେ, ଆଉ ପାଠ ଆମର କଣ ହେବ ! ବଡ଼ ଡାକ୍ତରୀ ନ ପଢ଼ା ହେଲେ ନାହିଁ । ଯେତିକି ହେଲା ସେତିକି, ସେଇଥିରେ ଡାକ୍ତର ହୁଅ ।

ନିରୁ ଅବାକାବା ହୋଇ ଶରତ ମୁହଁକୁ ଅନାଇଁଥାଏ । ଶରତ ପୁଣି କହିଲା—ଖୁଡ଼ୀଙ୍କର ମତଲବ କଣ ଜାଣ ମାଉସୀ ? ତାଙ୍କ ପୁଅ ମୂର୍ଖ ହେଲେ ଆଉ ମୁଁ ପାଠ ପଢିଲି । ଏଥିରେ କଣ ମୋର ଦୋଷ

ଦେହଲା । ଟଙ୍କା ନ ଥିବ କାହିଁକି, ଏଡ଼େ ବଡ଼ ଜମିଦାରୀରେ ମୋର କଣ ଭାଗ ନାହିଁ । ମୋର କିଏ ଖାଉଛନ୍ତି ? ଧରି ବସିଲେ ମୁଁ ଏଇକ୍ଷଣି କଣ କରି ଦିଅନ୍ତି, କିନ୍ତୁ ମୁଁ ସେମିତି ନୁହେଁ ମାଉସୀ ! ସେ ସମ୍ପତ୍ତି ବାଣ୍ଟି ସବୁ ଖାଇଲେ ବି ମୋ ମନରେ କଷ୍ଟ ନାହିଁ । ଯାହା ପଡ଼ିଛନ୍ତି, ସେତିକରେ ମୋ ପେଟ ଅପୋଷା ରହିବ ନାହିଁ । ଆଉ ଥରେ ପଚାରିବି, ଯଦି ମନା କରନ୍ତି ତାହାହେଲେ ତାଙ୍କର ମୋର ଦେଖା ଏତିକି । ଏ ଗାଁରେ ମୋ ପାଦ ପଡ଼ିବ ନାହିଁ ଏ ଜୀବନରେ ।

ନିରୁବୋଉ ଜିଭ କାମୁଡ଼ି ପକାଇ କହିଲେ—ଛିଃ, ଛିଃ, ଏଇ କଥା ଗୁଡ଼ାକ ମନରେ ଧରୁଛୁ ! ପାଗଳା ପୁଅଟା, ଏ ବୁଦ୍ଧି ଆଉ ଦିନେ ଧରିବୁ ନାହିଁ—ଛିଃ, ନିରୁବୋଉ ଇମିତି କେତେ କଣ କହି ଚାଲିଗଲେ । ଶରତ ସେଇଠି କାହାକୁ କିଛି ନ କହି ବସି ପଡ଼ିଥାଏ ।

ନିରୁ ଶରତକୁ ହଲାଇ ଦେଇ କହିଲା—ମୋଠାରେ ଲୋଭ ଥିଲେ ସିନା ହୁଅନ୍ତା ? ତୁମେ ତ ଚାଲିଯିବ ଶରତ ଭାଇ, ଆଉ ମୁଁ । ହଁ, ତୁମେ ଯା'—ମଠ ତ କଣ ଯିବାକୁ ବାଟ ନାହିଁ କି ? କଇଁପୋଖରୀ ହୁଡ଼ାକୁ ଗଲେ ତ......ଶରତ ତା' ପାଟି ଚପି ପକାଇ କହିଲା—ମୋ ଦେହ ଛୁଇଁ କହ, ଆଉ ଦିନେ ଇମିତି କଥା କହିବୁ ନାହିଁ । କହିଲେ ଜାଣିଥା । ମୁଁ ସିନା କହିଲି ତାଙ୍କ ମୁହଁ ନ ଚାହିଁବାକୁ, ତୋତେ କଣ ଜୀବନରେ କେବେ ଛାଡ଼ି ପାରିବି ନିରୁ !

ନିରୁ ମୁରୁକି ହସି ବଡ଼ ଅଭିମାନରେ କହିଲା—ତୁମ ଦୟା ଶରତ ଭାଇ । ଶରତ ତା' ହାତ ପାପୁଲିକୁ ଆଉଁସୁଥାଏ ।

ସଞ୍ଜ ବୁଡ଼ିଲା । ଶରତ କହିଲା—ତୁ ଥା' ନିରୁ ? ମୋ ପାଖକୁ ଚିଠି ଦେବୁ—ଏଁ ।

   

ଶାମବାବୁ କଚେରି କାମ ସାରି ମୁହଁ ହାତ ଧୋଇ ଚଉତରା ଉପରେ ବସିଥାନ୍ତି । ଚଉତରା ତଳେ ଦୁ' ତିନି ଜଣ ମଳିକ ବେକରେ ଗାମୁଛା ପକାଇ ହାତଯୋଡ଼ି ଗୁହାରି କରୁଥାନ୍ତି । ଏତିକିବେଳେ ହରି ମିଶ୍ର ହାତରେ ବେତ ବାଡ଼ିଟାକୁ ହଲେଇ ହଲେଇ ଚଉତରା ପାଖରେ ପହଞ୍ଚିଲେ । ଶାମବାବୁ ତାଙ୍କ ଅନ୍ତରଙ୍ଗ ବନ୍ଧୁ ମିଶ୍ରଙ୍କୁ ଦେଖି ଉଠିଗଲେ ହୋଇ ଡାକ ପକାଇଲେ—ପାନ ପାନ, ସତରଞ୍ଜିଟା ଆଣି ବିଛା ଚଞ୍ଚଳ । ସତରଞ୍ଜି ଆସିଲା । ଖିଲପାନ ଆସିଲା । ଭଲ ମନ୍ଦ କେତେ ଗପ ଚାଲିଥାଏ । ଏଥି ଭିତରେ ଆଉ ଦୁ' ତିନିଜଣ ଖୁସାମତିଆ ବୁଢ଼ା ବି ଆସି ସେଠି ଯୋଗ ଦେଲେଣି

ହରି ମିଶ୍ର କଥା କହୁ କହୁ ଆରମ୍ଭ କଲେ—ଗୋଟାଏ କଥା କହିବାକୁ ମନ ହେଉଛି ଶାମବାବୁ, କିନ୍ତୁ—

—ଏଁ—ଏଁ ମୋ ପାଖରେ ଆପଣଙ୍କର କଣ ଲୁଚା ଛପା କଥା !

—ଅଚ୍ଛା ତୁମ ଶରତ ଘରକୁ ଆସିଲେ ତାଙ୍କୁ ଏଣେ ତେଣେ କାହିଁକି ଛାଡ଼ୁଛ ଶୁଣେ ? ଭାରି ଚୁପ ସଇତାନିଆ ଟୋକା ସେ । ଆପଣଙ୍କର ତ ଦୁ' ଦୁ'ଟା ପୁଅ, ପାଠ ନ ପଢ଼ିଲେ କଣ ହେବ, ତାଙ୍କ କେଉଁ ଗୁଣକୁ ସେ ଟୋକା ସରି । ଆପଣଙ୍କ ପୁଅ ମଦନଟି, ଏଡ଼େ ସୁନ୍ଦର ବୁଦ୍ଧି, ପୁଣି ଦଶହାତରୁ ଦେଖିଲେ ଦଣ୍ଡବତ କରିବ । କି ପାଠ ପଢ଼ୁଛି କେଜାଣି, ଯେମିତି ସାତ ପୁରୁଷଙ୍କୁ ଉଦ୍ଧାର କରି ପକାଇବ । ଦେଖିଲେ ବି ଗୋଟା ଦଣ୍ଡବତ କରିବ ନାହିଁ । ମୋର ଯଦି ଇମିତି ଗୋଟାଏ ପୁତୁରା ଥା'ନ୍ତା, ତା ମୁହଁ ଚାହାଁନ୍ତି ନାହିଁ । ଆପଣ ତାକୁ ଫେର ପଇସାପତ୍ର ଦେଉଛନ୍ତି ପଢ଼ିବାକୁ ! ତା ବାପ ତୁମର କେଉଁ ଉପକାର କରିଥିଲା ନା, ପରକୁ ଦେଇ ଦେଇ କରଜ କରିଥିଲା ସୋପଡ଼େ । ତୁମେ ବୋଲି ଶାମବାବୁ ସବୁ କାମ ତୁଲେଇ

ନେଉଛ, ଆଉ କିଏ ପାରନ୍ତେ ନାହିଁ । ତା' ପୁଅକୁ ପୁଣି ପାଠ ପଢ଼ାଇବାକୁ ଟଙ୍କା ଦେଉଛ ! ଦେଖିବ ଲୁହ ଶାମବାବୁ, ମୁଁ ଯେଉଁ ସବୁ ଖବର ପାଉଛି, ତୁମେ ଯଦି ଆଗରୁ ସାବଧାନ ନ ହୁଅ, ତାହା-ହେଲେ ତୁମର ସେ ସର୍ବନାଶ କରିବ—ଜାଣିଥା ।

ଏକାଥରକେ ଏତେଗୁଡ଼ାକ କଥା କହିସାରି ମିଶ୍ରେ ଥକାହୋଇ ବସି ପଡ଼ିଲେ । ଆଉ ସମସ୍ତେ ତାଙ୍କ ମୁହଁକୁ ଅନାଇଁଥାନ୍ତି ।

ଶାମବାବୁ ବଡ଼ ଅବା କାବା ହୋଇ ତାଙ୍କ ହାତକୁ ଧରି ପକାଇ କହିଲେ—କଣ ମିଶ୍ରେ, କଥା କଣ !

—ଆଉ କଥା କଣ, ସେ ଏ ଗାଁରେ ବେଶ୍ୟାପଡ଼ା ଖୋଲୁଛି । ମଦନ ମାଷ୍ଟରଙ୍କ ବଡ଼ିଲା ଝିଅ ସଙ୍ଗରେ ତାର କି କଥାବାର୍ତ୍ତା । ଦିନ ରାତି ତା'ରି ଘରେ । ଭୁବନେଶ୍ବର ନେଇ ଯାଉଛି । ଏ ଟୋକା କଣ ବେଶ୍ୟାପଡ଼ା ନା କଣ । ମଦନ ମାଷ୍ଟର ୯ଟା ଟଙ୍କା ଦରମା ପାଇବ, ତାର ପୁଣି ଏତେ ଦମାକ । ମଣିଷ ଦେଖିଲେ କଥା କହୁ ନାହିଁ । ତା' ଘରେ ଏତେ ଧନ ସମ୍ପତ୍ତି କେଉଁଠୁ ଆସିଲା । ସବୁ ଏ ଟୋକାର ଫିକର । ଲୁଚାଇ ସବୁ ନେଇ ଦେଉଛି—ଜାଣିଲ ?

ଶାମବାବୁ ଦାନ୍ତ ରଗଡ଼ି କହିଲେ—ଏଁ, କଣ କହୁଛ ମିଶ୍ରେ, ମୋ ସ୍ତ୍ରୀ ଏହିକଥା କେଉଁଦିନଠୁ କହୁଛନ୍ତି, ମୁଁ ଶୁଣି ନ ଶୁଣିଲା ପରି ରହିଛି ।

—ତୁମ ପରି ତ ସେ ଅଜ ହୋଇ ନାହାନ୍ତି ? ଖାଣ୍ଟି ମଣିଷ ସେ—ବୁଝିଲ ? ତାଙ୍କର କଥା ମାନ, ନଚେତ ତୁମ ଜୀବନର ଆଶା ରଖନା । ଯଦି ପିଲା ଦୁହିଙ୍କର ମଙ୍ଗଳ ଚାହଁ, ତାହାହେଲେ ଏହି ଦିନଠୁ ଉପାୟ କର, ନୋହିଲେ......

ଶ୍ୟାମବାବୁ ଦାନ୍ତ କାମୁଡ଼ି କହିଲେ— ଅସ୍ତୁ ସେ ଏଥର ଦେଖିବ !

ହରି ମିଶ୍ର ଜିଭ କାମୁଡ଼ି ପକାଇ କହିଲେ—ଚୁପ୍ କର, ସେଥିରେ କିଛି ଫଳ ହେବନାହିଁ । ତାର ଉପାୟ ମୁଁ କହୁଛି—ଶୁଣ ।

ଶ୍ୟାମବାବୁଙ୍କ ଶୋଇବା ଘରକୁ ଦୁହେଁ ଉଠି ଗଲେ । ବାବୁଙ୍କ ସ୍ତ୍ରୀ ଥାଳିଆଟିରେ ପାନ ତାଙ୍କ ପାଖରେ ଥୋଇ ଦେଇ ମୁହଁ ଶୁଖାଇ କହିଲେ—ଏ କଣ ଅମର ଶୁଣିବା ଲୋକ ! ମୁଁ ସେଦିନ ଠାରୁ କହୁଛି ପରା ! ଟୋକା ପଢ଼ିଲା ବୋଲି ସିନା, ତା' ଆଖି ଆଜି ଫିଟିଲା ।

ମିଶ୍ରେ ହସି ହସି କହିଲେ—ଧୈର୍ଯ୍ୟ ଧର । ମୁଁ ଯଦି ଥିବି କିଛି ହେବ ନାହିଁ, ପାଦରେ କଣ୍ଟା ବାଜିବ ନାହିଁ । ଏଇଟା ତ ସାମାନ୍ୟ କଥା । ବୁଝିଲେ ଶ୍ୟାମବାବୁ, ମୁଁ ଭଲକରି ଜାଣେ ଶରତ ସେ ଟୋକୀ ଛଡ଼ା ଆଉ କାହାକୁ ବାହା କରିବ ନାହିଁ । ମୁଁ ଗୋଟା ଉପାୟ କହିବି, ଯଦି କରିବ, ତାହାହେଲେ ସେ ଟୋକା ଆଉ ଏ ଗାଁ ମାଡ଼ିବ ନାହିଁ । ଆଗେ ଶରତକୁ ଲେଖ, ତା' ବାହାଘର ନିରୁ ସଙ୍ଗରେ ଆସନ୍ତା ବଇଶାଖରେ ହେବ ବୋଲି ଏ ଦୁଇଦିନ ହେଲା ଠିକ୍ ହୋଇଛି । ଆଉ ପଢ଼ିବା ଠିକ୍ ନୁହେଁ । ପାଟଣା ଯାଇଁ ସେଠାରେ ଡ଼ାକ୍ତରୀ ବ୍ୟବସାୟ ଆରମ୍ଭ କରୁ । ଏ ଚିଠି ସେ ଯେମିତି ପାଇବ, ସେ ବଡ଼ ଖୁସି ହୋଇ-ଯିବ । ତା' ପରେ କିଛିଦିନ ଗଲାରୁ ଦୁଃଖ କରି ଲେଖିବ, ନିରୁ ବାବା ବିବାହ କରିବାକୁ ମଙ୍ଗିଲା ନାହିଁ । ଅନ୍ୟ ସଙ୍ଗରେ ତାର ବିବାହ ହୋଇ ଯାଇଛି । ଏଇଥିରେ ସେ ପାଗଳ ହେବ, ନଇଲେ ସେ ସେଇଆଡ଼େ ବିବାହ କରି ରହିବ ।

ହରି ମିଶ୍ର ଏତକ କହିସାରି ଗୁମ୍ ହୋଇ ବସି ରହିଲେ । ଶ୍ୟାମବାବୁ ତାଙ୍କୁ କୁଣ୍ଢାଇ ପକାଇ କହିଲେ—ଠିକ୍ କହିଛ ମିଶ୍ରେ,

ଏ ବୁଦ୍ଧି ଆଜ କାହା ମୁଣ୍ଡରୁ ବାହାରନ୍ତା ? ହରି ମିଶ୍ର ଟିକିଏ ମୁରୁକି ହସି ଠିଆ ହୋଇ କହିଲେ—ଯାଉଛନ୍ତି ଶ୍ୟାମବାବୁ । ସରବା ପତର ଘରେ କିଛି ନ ଥିଲା, ପଇସାପତ୍ର କେଉଁଠୁ ଯୋଗାଡ଼ କରେ ।

ଶ୍ୟାମବାବୁ ଖଟ ଉପରୁ ଉଠିପଡ଼ି କହିଲେ—ଏ କଣ ତୁମ ଘର ନୁହେଁ ? ଅଣ୍ଟାରୁ ଦୁଇଟଙ୍କା ବାହାର କରି ତାଙ୍କ ହାତରେ ଗୁଞ୍ଜି ଦେଇ କହିଲେ—ନିଅ, ଖର୍ଚ୍ଚବାର୍ଚ୍ଚ ତୁମ ପୁଅ କରିବ । ମୁଁ ଗୁହର ହାତରେ ପତ୍ରବାସନ ପଠାଇ ଦେଉଛି—ଯାନ୍ତୁ ।

   

କଟକରେ ବିଭୂତି ବାବୁଙ୍କ ଭଉଣୀର ବିଭାଘର ବଡ଼ ଆଡ଼ମ୍ବରରେ ଶେଷ ହେଲା । ଗୁରୁବାର ଦିନ ପରୀକ୍ଷା ଫଳ ବାହାରିବ ବୋଲି ଶରତ ଓ ବିଭୂତି ଦୁହେଁଯାକ ଦୁଇଖଣ୍ଡ ସାଇକଲରେ ମେଡ଼ିକାଲ ଆଡ଼େ ଯାଇଥାନ୍ତି । ବିଭୂତି ସାଇକଲଟା ରଖିଦେଇ ଅଫିସ ଭିତରକୁ ପଶିଯାଇ ଶରତର ପାଶ୍ କଥା ପଚାରିବାରୁ କାରଣବାବୁ କହିଲେ—ସେ ତ ଭଲ ପିଲାଟା । ତା'ର ପାଶ୍ କରିବାରେ କ'ଣ ସନ୍ଦେହ ଥିଲା ! ପ୍ରଶଂସା ସହିତ ପାଶ୍ କରିଛି । ଗଲା କୁଆଡ଼େ ? ଶରତ ପଛଆଡ଼ୁ ହସିହସିକା ଯାଇଁ ଦଣ୍ଡବତ କଲା । କେତେ ଗପସପ କଲା ପରେ ଦୁଇବନ୍ଧୁ ବସାକୁ ଫେରିଲେ । ବାଟରେ ଡାକପିଅନ ଦେଖି ଡାକ ପକାଇଲା—ଶରତବାବୁ, ଆପଣଙ୍କର ଚିଠି ଆଉ ଟଙ୍କା ଆସିଛି ।

ଶରତ ଚିଠି ଖଣ୍ଡିକ ନେଇ ଆଗେ ଦେଖିଲା—ନିରୁ ଦେଇଛି କି ନାହିଁ । କିନ୍ତୁ ଅକ୍ଷର ଦେଖି ହତାଶ ହେଲା । ଏ ନିରୁ ହାତର ଅକ୍ଷର ନୁହେଁ । ତା'ପରେ ଚିଠି ଖଣ୍ଡିକ ପକେଟରେ ରଖି ମନି-ଅର୍ଡରଟା ଦେଖିଲା ବେଳକୁ ପାଞ୍ଚଶ ଟଙ୍କା । ପ୍ରଥମେ ବଡ଼ ଅବାକ୍

କାବା ହୋଇଗଲା । ପାଞ୍ଚଶ ଟଙ୍କା କିଏ ପଠାଇଲା ! ଶେଷରେ ନିଜ ଦାଦାର ଦସ୍ତଖତ ଦେଖି ବଡ଼ ବିସ୍ମିତ ହୋଇ ଟଙ୍କା ଗଣି ନେଲା ।

ତା'ପରେ ଚିଠି ଖୋଲି ପଢ଼ିଲା—

ଚଣ୍ଡୀହାଟ

ଗୁରୁବାର

ଶ୍ରୀମାନ୍ କଲ୍ୟାଣୀୟ ଶରତ,

ମୋର ଓ ତୋ ଖୁଡ଼ୀର ଆଶୀର୍ବାଦ ଗ୍ରହଣ କରିବୁ । ତୋ ଖୁଡ଼ୀକୁ ଗୃହଦାହ ଜର ହୋଇ ଛାଡ଼ି ଯାଇଛି । ତୁ ଶୁଣି ଖୁସି ହେବୁ ଯେ, ଏହି ଗୃହଦାହ ଜରରେ ତୋ ଖୁଡ଼ୀ ପାଗଳ ପରି ହୋଇ ତୋ ବାହାଘର ଦେଖି ଯିବ ବୋଲି ଦିନ ରାତି ମୁଣ୍ଡ କରୁଥିଲା । ମୁଁ ଓ ଗାଁର ପାଞ୍ଚଜଣ ଭଦ୍ରଲୋକ ମିଶି ମଦନ ପଟ୍ଟନାୟକଙ୍କ ଝିଅ ନିରୁଛିକୁ ଠିକ୍ କଲୁ । ମୋ ମନ ବି ମାନିଛି, ବେଶ ପିଲାଟିଏ । ମହାପ୍ରସାଦ ନିର୍ବନ୍ଧ ଏହି ମାସ ୭ ତାରିଖ ଦିନ ହେବ । ବର୍ତ୍ତମାନ ବିବାହ ଘର ନାହିଁ । ଆସନ୍ତା ବଇଶାଖକୁ ରହିଲା । ମୋ ବାପାଙ୍କ ପରି, ଆଉ ଅଭୁଆ ହୁଅ ନାହିଁ । ଏ ଯୁଗରେ ଦେଶ ପତି କି ଲାଭ କଲ ? ଆଜି ୫୦୦ ଟଙ୍କା ପଠାଇଲି । ତୁ ଶୀଘ୍ର ପାଟଣା ଯାଇ ସେଠାରେ ବୁଲିବୁଲି କରି ବ୍ୟବସାୟ କର ।

ଖୁଡ଼ୀ ଆସିବାକୁ ଭାରି ଜିଗର ଲଗାଉଥିଲା, କିନ୍ତୁ ମୋ ମତରେ ତାଙ୍କୁ ଆସିବା ବର୍ତ୍ତମାନ ଅବସ୍ଥାରେ ଠିକ ନୁହେଁ । ଗାଁର ଖରାପ ଲୋକ ଗୁଡ଼ାକ ଯାବତ କଥା କହିବେ । ବିବାହ ଆଠଦିନ ଥିବ, ମୁଁ ଚିଠି ଲେଖିବି । ଆଉ ଯଦି କିଛି ଟଙ୍କା ଦର୍କାର ହୁଏ ପାଟଣା ଠାରୁ ଯାଇ ଲେଖିବୁ । ଆଉ ସମସ୍ତେ ଭଲରେ ଅଛନ୍ତି ।

ତୋର ଶୁଭାକାଂକ୍ଷୀ ଦାଦା

ଶ୍ୟାମସୁନ୍ଦର

ଶରତ ଚିଠି ଖଣ୍ଡିକ ପଢିସାରି ଦାଦା ଖୁଡ଼ୀଙ୍କ ପ୍ରତି ସ୍ନେହରେ ତା ଅନ୍ତର ପୂରି ଉଠିଲା । ଯେତେହେଲେ ଦାଦା ଖୁଡ଼ୀ—ଏକା ରକ୍ତ । ମୁହଁରେ ସିନା ଯେମିତି ଦ'ପଦ କହିଥିଲେ, ତାଙ୍କ ଅନ୍ତରଟା ପ୍ରକୃତରେ କେତେ ସରଳ । ଆଗରୁ ଦାଦା ଖୁଡ଼ୀଙ୍କ ପ୍ରତି ତାର ଯେଉଁ ଖରାପ ଧାରଣା ଜନ୍ମିଥିଲା, ସେଥିପାଇଁ ସେ ବଡ଼ ମନକଷ୍ଟ କଲା ।

ବସାକୁ ଦୁହେଁ ଫେରିଲେ । ଶରତ ଖାଇପିଇ ଦାଣ୍ଡ ମେଲା ଖଟ ଉପରେ ଶୋଇ ଭାବୁଥାଏ—ପ୍ରକୃତରେ ଭଗବାନଙ୍କର ତା ଉପରେ କେବଡ଼ ଦୟା । ଯେଉଁ ଦିନ ପାଶ ଖବର, ସେହିଦିନ ପୁଣି ତା ପ୍ରାଣ ପ୍ରିୟ ନିରୁ ସଙ୍ଗରେ ବିବାହ ପାଇଁ, ଦାଦା ଖୁଡ଼ୀ ଠିକ କରିଛନ୍ତି । ଆସନ୍ତା ବଇଶାଖରେ ନିରୁ ତାର ରାଣୀ ହେବ—ଏଇ ଭାବନାରେ ଅନ୍ତର ତାର ଫୁଲି ଉଠୁଥାଏ—ଠିକ ପୂର୍ଣ୍ଣିମୀ ରାତିରେ ସମୁଦ୍ର ପରି । ଦଣ୍ଡକେ ଭବିଷ୍ୟତ ସୁଖର କେତେ ଯେ କଳ୍ପନାର ଦେଉଳ ଗଢୁଥାଏ ତାର ଇୟତ୍ତା ନାହିଁ ।

ଦୁଇଦିନ ପରେ ବିଭୂତି ପ୍ରଭୃତି ପାଟଣା ବାହାରିଗଲେ । ଶରତ ତାଙ୍କରି ସାଙ୍ଗରେ ଗଲା । ବିଭୂତି, ଭା' ବୋଉ ତାର ସ୍ନେହ ଭଉଣୀ ଆରାଟି ତାକୁ ଏକାବେଳକେ ନିଜର କରି ନେଇଥାନ୍ତି । ଶରତ ଯେତେ କହିଲା—ଅନ୍ୟ ବସା କରିବାକୁ, ଏମାନେ କରାଇ ଦେଲେ ନାହିଁ । ଶରତ ବାଧ ହୋଇ ମାସେ ତାଙ୍କରି ଘରେ ରହିଲା ।

ପାଟଣା ଯିବା ପୂର୍ବରୁ ଶରତ ଭାବିଥିଲା—ନିରୁ ପାଖକୁ ଖଣ୍ଡେ ଚିଠି ଓ କିଛି ଜିନିଷ କିଣି ପଠାଇ ଦେବ । କିନ୍ତୁ ନିରୁ ସହିତ ତାର ବିବାହ ଠିକ ହୋଇ ଯାଇଥିବାରୁ, ଚିଠିପତ୍ର ଦେବାକୁ ତାକୁ ଗୋଟାଏ କମିତି କିମିତି ଲାଗିଲା । ବିବାହ ପର୍ଯ୍ୟନ୍ତ ତାକୁ ଚିଠି ଗୋଟାଏ

କମିତ ଦେବ ! ଯଦି ନିରୁ ସଚେ, ତାହାହେଲେ ବିବାହର ପ୍ରଥମ ରାତରେ ତାର ଅଭିମାନ ସବୁ ଭାଙ୍ଗିଦେବ ଯେ······

   

ଯେବେ ନିରୁବୋଉ ତାଙ୍କ ସ୍ୱାମୀଙ୍କୁ ଘସି ଦେଇ ଯୋଉ କହିଲେ, ହଇଏ, ଆଉ କେତେଦିନ ଇମିତ ଚୁପ୍ ହୋଇ ବସିବ । ନିରୁ କଣ ଛୁଆଟିଏ ହୋଇଛି ନା କଣ ? ଶ୍ୟାମବାବୁଙ୍କୁ ଯାଇ କହୁଆସ, ଶରତର ବାପା ବୋଉ ତ ମହାଦେବଙ୍କ ଦେଉଳରେ ପ୍ରତିଜ୍ଞା କରି ଯାଇଛନ୍ତି, ଆଉ ସେଥିରେ କଥା କଣ ଅଛି ?

ନିରୁ ବାପା ଟିକିଏ କଣ ଭାବି କହିଲେ—ହଁ, ଯାହା କହୁଛ ଠିକ୍ କଥା । ନିରୁ ଉପରେ ଆମର ଆଉ ଦାବି କ'ଣ ? ମୁଁ କାଲି ପଚାରି ଆସେ, କେବକୁ ଠିକ୍ କରୁଛନ୍ତି । ଶରତ ଖୁଡ଼ୀ ଏ କଥା ଜାଣନ୍ତି ନା ?

—ହଁ ଜାଣନ୍ତି ନାହିଁ ଆଉ କ'ଣ । ସେଦିନ ତ ସେ ସାଙ୍ଗରେ ଥିଲେ ।

ତହିଁ ଆରଦିନ ଉପରବେଳା । ନିରୁ ବାପା ଭଲ ଲୁଗା ଖଣ୍ଡିଏ ପିନ୍ଧି, ଧୋତ ପଞ୍ଜାବି ମଡ଼ାଇ ତା ଉପରେ ଚଦର ଖଣ୍ଡିକ ପକାଇ ଶ୍ୟାମବାବୁଙ୍କ ଦୁଆର ମୁହଁରେ ପହଞ୍ଚିଲେ । ଶ୍ୟାମବାବୁ ଆଉ ହରି ମିଶ୍ରେ ଦୁହେଁଯାକ ବସି କଣ ଗପସପ ହେଉଥାନ୍ତି । ଉପର ମୁହଁରେ ଶ୍ୟାମବାବୁ ତାଙ୍କୁ ଦେଖି ଡାକ ପକାଇଲେ—କିଏ ଅଛ, ଆଣରେ ମଦନବାବୁଙ୍କ ପାଇଁ ପାନ । ମଦନବାବୁ ଯାଇଁ ତାଙ୍କ ପାଖରେ ବସିଲେ । କେତେ ଗପସପ ପରେ ଶ୍ୟାମବାବୁ ବଡ଼ ବିସ୍ମିତ ହୋଇ ପଚାରିଲେ—କୁଆଡ଼େ ଆଇଲେ ଏତେ······ ।

ମଦନବାବୁ ଟିକିଏ ହସି କହିଲେ—ଆଉ କେଉଁର କେଉଁର କାହିଁକି କରୁଛନ୍ତି ? ପିଲା ବେଳରୁ ତ ଆମର କଥାବାର୍ତ୍ତା ସରିଯାଇଛି, ଆଉ କଥାବାର୍ତ୍ତା କଣ ହେବ । ନିରୁଟି ମୋର ବର୍ଷେ ହେଲା ଘର-ଯୋଗ୍ୟ ହୋଇ ରହିଲାଣି । ଶରତ ବି ପାଶ୍ କରିଛି । ଗୋଟାଏ ଦିନ ବାର ଧରି ଠିକ କରିଦିଅନ୍ତୁ । ନିଜ ଆଖିରେ ଟିକିଏ ହେଲେ ଦେଖି-ଯିବା । ମଣିଷ ଜୀବନ ପାଣିଫୋଟକା—କିଏ ଜାଣେ କେତେବେଳେ କେଉଁ କଥା ।

ହରି ମିଶ୍ରେ ଗୁଡ଼ାଖୁ ହୁକାଟା ଭଡ଼ଭଡ଼ କରି ଫସଫସ ଧୂଆଁ ଛାଡ଼ି କଥା ଚୁପ୍ ହୋଇ ଶୁଣୁଥାନ୍ତି । ଶାମବାବୁ ଟିକିଏ ଗୁମ୍ ମାରି କହିଲେ—ହଁ ମଦନ ବାବୁ, ଯାହା କହିଲ ବୁଝିଲି । ତେବେ ମୁଁ ଆଉ ଏସବୁ ବିଷୟ କିଛି ବୁଝୁନାହିଁ । ମିଶ୍ରଙ୍କୁ ପୁଛ, ସେ ଘରଅଡ଼େ ବୁଝି ଯାହା କହିବେ ।

ହରି ମିଶ୍ରଙ୍କ ଉପରେ ଶାମବାବୁ ଏତେବଡ଼ ଭରଷା ଦେଇଛନ୍ତି ବୋଲି ତାଙ୍କର ଗର୍ବରେ ଛାତି ଫୁଲି ଉଠୁଥାଏ । ଗୁଡ଼ାଖୁ ନଳିଟାକୁ ଖୁବ୍ ଜୋରରେ ଧ'ରି ଟାଣିନେଇ କହିଲେ—ଜାଣିଲ ମଦନ-ବାବୁ, ଆମ ବାବୁ ଏବେ ବାବାଜୀ ପାଲଟି ଗଲେଣି । ଆପଣ ଟିକିଏ ବସନ୍ତୁ, ମୁଁ ସବୁ ବୁଝି କହୁଛି । ତା'ପରେ ମିଶ୍ରେ ଖଡ଼ମ ମାଡ଼ି ଘର ଅଡ଼କୁ ଚାଲିଗଲେ ।

ଅଧ ଘଣ୍ଟା ଗଲା । ବାବୁଆଣୀଙ୍କ ସଙ୍ଗରେ କି କଥାବାର୍ତ୍ତା ହେଲେ କେଜାଣି, ମିଶ୍ରେ ଆସି ଆଗେ ଗୁମ୍ ମାରି ବସି ପଡ଼ିଲେ । ତା'ପରେ ଆରମ୍ଭ କଲେ—ଜାଣିଲ ମଦନବାବୁ, ଶରତ ବୁଦ୍ଧିମାନ ପିଲାଟା । ପାଟଣା ଯାଇଛି ଡାକ୍ତରୀ କାମ କରିବାକୁ, ତା ଶୁଡ଼ୀର ଜମାରୁ ଇଚ୍ଛା ନାହିଁ । ତେବେ ଆଉ ମଦନବାବୁ ବସି ରହିବେ କାହିଁକି, ନିରୁ ପାଇଁ

ପିଲାଟିକୁ କାହାର ବୋହୂ କରି ନେବାକୁ ଇଚ୍ଛା ନ ହେବ । ମୋ ମତରେ ଅନ୍ୟଠାରେ କରିବା ଠିକ । ଜାଣିଲ ମଦନବାବୁ, ଆଗରେ ଗୋଟାଏ କଥା—ପଛରେ ଗୋଟାଏ କଥା ମତେ ଆସେ ନାହିଁ । ମୋତେ ଉପରେ ବାବୁଆଣୀଙ୍କର ମତ ଏଠି କରିବେ ନାହିଁ । ତାଙ୍କର ଅନ୍ୟ ଆଡ଼େ ଠିକ ହୋଇଛି । ଦେଉଳରେ ନିଯୁମ କରିବା କଥା, ବୁଝିଲ କହିଲ, ଆଜିକାଲି ତ ଇଂରେଜ ଅମଳ, ସେକଥା ସେ ଜମା ମାନିଲେ ନାହିଁ । ଅଚ୍ଛା, ଆମେ ଗୋଟିଏ ବର ଠିକ କରିଦେବା । ଅପଣ ଆଉ ଏଠି ଆଶା ରଖିବେ ନାହିଁ । ମୋ ମତରେ ଏଠି ହୋଇ-ଥିଲେ ଭଲ ହୋଇଥାନ୍ତା, କିନ୍ତୁ ବିଧାତା ଯାହା ସଙ୍ଗରେ ଯାହା ଯୋଡ଼ା ଗଣ୍ଠିଛି, ମଣିଷର ହାତ କଣ ଅଛି !

ମଦନବାବୁ, ମିଶ୍ରଙ୍କ ମୁହଁରୁ ଏତକ ଶୁଣି ତାଙ୍କ ଦେହରୁ ଅଧେ ରକ୍ତ ଶୁଖିଗଲା । ଛାତିଟା ଦମଦମ ପଡ଼ୁଥାଏ । ଗୋଟାଏ ଦୀର୍ଘ ନିଶ୍ୱାସ ପକାଇ କହିଲେ—କଣ କହୁଛ ମିଶ୍ରେ, ପିଲାଟି ଦିନର ନିଯୁମ କଣ ଭାଙ୍ଗିବ !

ମିଶ୍ରେ ଟିକିଏ ହସି କହିଲେ—ମୋର ଗୁଡ଼ା କ'ଣ, ସେ ତ ଏକବାରେ ନାରାଜ । ଆଉ ଅଧିକା କହି ଲାଭ କଣ ମଦନବାବୁ ।

ମଦନବାବୁ ପୁଣି ଥରେ ଲୁହ ଛଳ ଛଳ କରି କହିଲେ—କଣ କହୁଛ ଶାମବାବୁ ?

ଶାମବାବୁ ଟିକିଏ ବିରକ୍ତ ପ୍ରକାଶ କରି କହିଲେ—ନା, ମୋର ଆଉ କଣ କହିବାର ଅଛି ।

ମଦନବାବୁ ଆଉ କିଛି କହିଲେ ନାହିଁ । ଥରଥର ଗୋଡ଼ରେ ତଳକୁ ଓହ୍ଲାଇଲେ । ଦୁନିଆଟା ତାଙ୍କୁ ଅନ୍ଧକାର ଦେଖାଯାଉଥାଏ । ଅନ୍ଧାରରେ ବାଡ଼ ବୁଲାଇଲା ପରି ପାଗଳଙ୍କ ଭଳି ଘରକୁ ଫେରିଲେ ।

ନରୁ ବୋଉ ଯେମିତ ଏ କଥା ଶୁଣିଛନ୍ତ, ନରୁକୁ କୁଣ୍ଢାଇ ପକାଇ ଭେ ଭେ ହୋଇ କାନ୍ଦିଲେ । ନରୁ ଶୁଖି କଳାକାଠ ପଡ଼ିଗଲା । ତା'ର ସରଳ ମନଟି ନହାତ ଗ୍ଲେଛ ଛୁଆଟି ପର କାନ୍ଦିବାକୁ ଲଗିଲା । ହୃଦୟର ସବୁ ବେଦନା ଆଖିବାଟେ ଝର ଝର ହୋଇ ବୋହି ପଡୁଥାଏ । ତଥାପି ନରୁର ମନରେ ଆଶା ଥାଏ, ସିଏ ଯାହା କହୁ ପଛକେ, ଶରତ ଭାଇ କଣ ତାକୁ ଭୁଲି ରହିବ ! କଦାପି ନୁହେଁ । ଯଦି ତାକୁ କିଏ ଅନ୍ୟ ସଙ୍ଗରେ ଯୋଗାଡ଼ କରେ, ତାହାହେଲେ ସେ ଆତ୍ମହତ୍ୟା କରିବ । ସେ ଦିନଟାଯାକ ଆଉ କାହାର ଖିଆପିଆ ନାହିଁ । ନରୁର ଦୁଃଖରେ ଗଛ ପତର, ଗୃହ ଗଣ୍ଡି ବ ମଉଳ ପଡ଼ିଲେ । ସମସ୍ତେ ତା ଦୁଃଖରେ ଯେମିତ ଦୁଃଖୀ । ସେହିଦିନ ରାତି ପାହାନ୍ତାରେ ମଦନବାବୁ ଜରରେ କମ୍ପି କମ୍ପି କହିଲେ, ନରୁ ବୋଉ, ନରୁ ବୋଉ, ଓହୋ ଜୀବନ ବାହାରି ଯିବ—ମୋତେ ଘୋଡ଼ାଇ ଦିଅ ।

ଅଠଦିନ ପରେ । ଗ୍ରାମ ପଧାନ କର୍ତା ଦଇତ ଭାଙ୍ଗୁ ଭାଙ୍ଗୁ କହିଲା—ଶୁଣିଲଣି ରେ ପରିଆ, ମଦନବାବୁ ଗାଁ ଗୋଟାକପର ଲୋକ ଗୋଟା । ଆଉ ବେଶି ହେଲେ ପାହାନ୍ତା ପହର ଟେପିବ କ ନାହିଁରେ ! ବଇଦ ଯାଇଥିଲା—ଦେଖି ମୁହଁ ବୁଲାଇ ଫେରି ଆସିଛି । ସିଏ ଭଲ ମଣିଷ ସେ ଗୋଟି ଗୋଟି କରି ଯାଉଛନ୍ତ । ଏ ଜୀବନଟାକୁ ଯମ ନ ନେଇ ରଖିଛି କେଜାଣି କାହିଁକି ! ଜର ବାଧକ କିଛି ନୁହେଁ, ଲୋକଟା କେବଳ ଚିନ୍ତାରେ ମଲା । ତାଙ୍କ ଝିଅ ନରୁଟି ପରି ବୋହୂ ପୁଣି କିଏ ପାଇବ ! ବଡ଼ ସାଆନ୍ତାଣି ନିଷ୍ଠୁର କରି ଯାଇଥିଲେ, ସେ ଯଦି ଆଜି ଥାଆନ୍ତେ—ଏ ପୁଣି, ହାୟରେ ବିଧାତା ! ତା' ସୁନାଘରଟା ଆଜି ଚୂନା ହେଲା ସିନା !

ପରେ ଅ ଦୀର୍ଘ ନିଶ୍ୱାସ ମାରି କହିଲି—ଛାଡ଼ ସାଅନ୍ତେ, ଏ ତ ଘୋର କଳିକାଳ, ଆଉ ବେଶିଦିନ ନୁହେଁ, ଚକୁଳିପିଠା ସବୁ କେଉଁଠି ପଡ଼ିବ । ଦେଖିବ ନାହିଁ ଦ' ଆଖିରେ ।

ଯିବା ଆସିବା ସମୟ । ନିରୁ ବୋଉ ଗୋଡ଼ ପାଖରେ ବସି ଅଉଁସୁଥାନ୍ତି । ଆଖିରୁ ଲୁହ ଝର ଝର ଗଡ଼ ପଡୁଥାଏ । ନିରୁ ମୁଣ୍ଡ ଉପରେ ବସି ବାପାଙ୍କର ମୁହଁକୁ ଅଉଁସୁଥାଏ । କାନ୍ଦ କାନ୍ଦ ଆଖି ତାର ଏଡ଼େ । ମୁହଁଟି ଶୁଖି ଯାଇ ଯିବ । ବାଳଗୁଡ଼ିକ ତେଲ ନ ବାଜି ଫୁରୁଫୁରୁ । ମଦନବାବୁ ଆଖି ବୁଜି ବୋଧହୁଏ ଶେଷ ପର୍ଯ୍ୟନ୍ତ ନିରୁ କଥା ଭାବୁଥିଲେ ।

ଦଣ୍ଡେ ଗଲା । ଗୋଟାଏ ଜୋରେ ହିକା ଆସିଲା । ତା'ପରେ ଆଖି ଦୋ'ଟି ଫିଟିଗଲା । ଆଖିରେ ଲୁହ ! ବଡ଼ ମିନତି ହୋଇ ନିରୁ ଆଡ଼େ ଅନାଇଁଥାନ୍ତି । ପାଟି ଫିଟୁ ନ ଥାଏ । ସେ ଚାହାଣିରେ ଯେପରି କହୁ-ଥାନ୍ତି—ନିରୁ, ମା' ମୋର, ତୋ ପାଖରେ ମୁଁ ଦୋଷୀ, ଦୁନିଆରେ ତୋର ମୁଁ କିଛି କରି ପାରିଲି ନାହିଁ । ତୋ କରମ । ଇମିତି କେତେ ସମୟ ଅନାଇଁଲେ । ଆଖିରୁ ଲୁହ ଗଡ଼ିଲା । ବଡ଼ କଷ୍ଟରେ ନିରୁର ହାତଟିକୁ ନିଜ ଛାତି ଉପରକୁ ନେଇ ଜୋରରେ ଚାପି ଧରିଲେ । ନିରୁ ସବୁ ବୁଝି ପାରିଲା । କହିଁ କହିଁ ହୋଇ କାନ୍ଦି ତାଙ୍କ ଉପରେ ମୁଣ୍ଡ କଚାଡୁଥାଏ ।

ରାତି ପାହିବାକୁ ଅଳ୍ପସମୟ ବାକି । ଘର ଦୁଆର କମିତି କମିତି ମାଡ଼ି ପଡୁଥାଏ । ଗାଁ ସେମୁଣ୍ଡ ମଶାଣିରୁ ଭେଉଣ୍ଡାଟା ଖୁବ୍ ଜୋରରେ ଭୁକି ଉଠିଲା । ନିରୁ ଓ ତା' ବୋଉ ଚମକି ପଡ଼ିଲେ । ସେପାଖର ଡାକ ଆସିଲା ବୋଧହୁଏ । ମଦନ ବାବୁଙ୍କର ଗୋଟାଏ ଉଚ୍ଛ୍ୱାସନା

ଆସିଲା । ପୁଣି ନିରୁ ହାତକୁ ଝୁମ୍ପି ଧରିଲେ । ନିରୁ ବୋଉକୁ ପୁଣି ଥରେ ବଡ଼ କରୁଣ ସ୍ୱରରେ ଡାକିଲେ । ତା'ପରେ, ତା'ପରେ ଗୋଟାଏ ଜୋରରେ ହିକା ଆସିଲା । ଦେହଟା ଅଟପ ଅଟପ କରେଇ ହୋଇଗଲା ।

ନିରୁ କାନ୍ଦି କାନ୍ଦି ଡାକିଲା—ବାପା ! ବାପା !

କିଏ ଜାଣେ ବାପା ଯାଇଁ ସରଗ ପଥରେ, କେତେ ଦୂରରେ !

ଗାଁ ସେମୁଣ୍ଡ ମଶାଣିରେ ଚିତା ଜଳିଲା ହୁ-ହୁ । କିଏ ହସିଲା, କିଏ କାନ୍ଦିଲା । କିନ୍ତୁ ନିରୁ ଆଜ, ସୁନାର ସଂସାର ଚୂନା ହେଲା ।

   

ଶରତ ନିତି ଦେଖେ ସୁଖର ସ୍ୱପ୍ନ । ଦିନ ଯେତିକି ଗଡ଼ି ଯାଉ-ଥାଏ, ସୁଖସ୍ମୃତିର କଥା ଭାବି ତାର ମନ ସେତିକି କୁରୁଳି ଉଠେ । ସେ ଆଉ ବର୍ତ୍ତମାନ ତାର ବନ୍ଧୁ ବିଭୂତି ଘରେ ନାହିଁ । ପାଖରେ ଗୋଟାଏ ସୁନ୍ଦର ଏକମହଲା ଘର ଭଡ଼ା ନେଇ ରହୁଛନ୍ତି । ବେଶ୍ ଘରଟିଏ । ଆଗରେ ଖଣ୍ଡିଏ ଛୋଟ ଫୁଲ ବଗିଚା । ଧଳା ଆଉ ନାଲି ଗୋଲାପରେ ବଗିଚାଟି ଭରପୂର । ଶରତର ପରିଶ୍ରମ ଫଳରେ ଅଳ୍ପଦିନ ମଧ୍ୟରେ ପାଟଣା ସହର ସହରରେ ଭଲ ଡାକ୍ତର ବୋଲି ଖୁବ୍ ନାଁ କରିଗଲା । ରୋଜଗାର ବି ବେଶ୍ ହେଉଥାଏ । ମଣିଷ ଭିତରେ ଶରତ, ପୁଷ୍ପାଞ୍ଜଳି ଆଉ ଚାକରଟିଏ ।

ଶରତ ଯାହା ରୋଜଗାର କରେ ସେ ସବୁ ଟଙ୍କାରେ ଭଲ ଭଲ ଜିନିଷ ସବୁ କିଣି ଘର ସଜାଏ । ସୁନ୍ଦର ସୁନ୍ଦର ଛବି କିଣି ଘରଯାକ ମାରିବା ଶରତର ଗୋଟାଏ ଖିଆଲ । ସେଥିପାଇଁ ସେ ଦେଶି ଛବିଠାରୁ ଜାପାନୀ ଛବି ପର୍ଯ୍ୟନ୍ତ କିଣି ଘରଯାକ ମାରି ଦେଇଛନ୍ତି ।

ଏସବୁ ସାଜସଜା କେବଳ ନିରୁ ପାଇଁ । ବେଳେ ବେଳେ ଝଡ଼ୁଁତ ଉଉଣୀ ଅଶାନ୍ତି ଶରତ ଘରକୁ ଆସେ । ନିଜ ଘରପର ଶରତର ଟେବୁଲଟି ସଜାଇ ଦିଏ । ଫୁଲଦାନିରୁ ବାସିଫୁଲ ପକାଇ ଦେଇ, ବଡ଼ ବଡ଼ ଗୋଲାପ ଫୁଲ ଆଣି ସଜାଇ ଦିଏ । ଅଶାନ୍ତିକୁ ବୟସ ବାର ତେର ହେଲେ କଣ ହେବ, ବେଶ୍ ବୁଦ୍ଧି ସୁଦ୍ଧି ଅଛି । ଗୋରା ତକତକ ଦେହ ଠିକ୍ ପଦ୍ମଟି ପରି । ସେ ଯେତେବେଳେ ଘରେ ପଶି ଏସବୁ କାମ କରୁଥାଏ, ଶରତକୁ ଭାରି ଭଲ ଲାଗେ । ସେ ଭାବେ, ଅଶାନ୍ତି ପରି ଠିକ୍ ତାର ନିରୁ । ଯା'ର ବୟସରେ ସେ ବି ସେମିତି ଦୁଷ୍ଟ ଥିଲା । ଆଜି ବି ତାର ସେ ପିଲାଳିଆ ଢ଼ଙ୍ଗ, କଥା କଥାକେ ରୁଷା ଘୁଡ଼ ଯାଇନାହିଁ ।

ଆରାମ ଚେୟାରଟରେ ବସି ଇମିତ କେତେ କଣ ଭାବୁ ଭାବୁ ତାର ମନ କୁଆଡ଼େ ଯାଏ । ଭାବନାର ସ୍ରୋତ ଅତର ବେଗରେ ଗୁଲେ । ଭାବେ—ଆଉ ଦୁଇଟି ମାସ ପରେ ତାର ନିରୁ ଏଠିକୁ ଆସିବ । ଏ ଘର, ଏ ସହର, ଏ ସାଜସଜା ଦେଖି କେଡ଼େ ଖୁସି ହେବ । ନିରୁ ପ୍ରଥମେ ଯେମିତ ଆସିବ ସେମିତ ତାକୁ ସେ ସିନେମା ଦେଖାଇ ନେବ, ସହର ବଜାର ସବୁ ବୁଲାଇ ଆଣିବ । ଏ ତ ଗଲା ପ୍ରଥମ କଥା । ତା'ପରେ ଏହି ଫୁଲ ବଗିଚାରେ ଗୋଟାଏ ଚଉତରା କରିବ । ଜହ୍ନ ପଡ଼ିଥିବ କଇଁଫଳ ପରି, ସାରା ସଂସାରଟା ରୁପା ପାଣିରେ ଧୋଇ ହେଲାପରି ଭାରି ଚକ୍ ଚକ୍ ଦେଖା ଯାଉଥିବ । ଗୋଲାପ ଫୁଲ ମୁଣ୍ଡ ଟେକିଙ୍କାର କଣ କଥାବାର୍ତ୍ତା ହେଉଥିବେ । ସେ ଓ ନିରୁ ଦୁହେଁ ଚେୟାର ଉପରେ ବସି ଜଳଖିଆ ଖାଇବେ । ତା'ପରେ ନିରୁ ପିନ୍ଧିବ ଗୋଲାପୀ ଶାଢ଼ୀ ଖଣ୍ଡିଏ, ଶରତ ସାଦା ଲୁଗା, ମଖମଲ ପଞ୍ଜାବିଟିଏ ପିନ୍ଧି ହାତ ଧରାଧରି ହୋଇ ଚଉତରା ଉପରକୁ ଆସିବେ । ଶରତ

ବସିବ ଗୋଡ଼ ଲମ୍ବାଇ, ନିରୁ ତା' ପାଖରେ ଲଗି କରି ବସିବ, ଶରତ କଣ କରିବ ନା, ତା' ହାତକୁ ଉପରକୁ ଆଉଜେଇ ଆଣି ଗେଲ୍ କରିଦେବ । ନିରୁ ତାକୁ ଥଟ୍ଟା କରି କେତେ କଣ କହିବ । ଦୁହେଁ ଦୁନିଆକୁ ଭୁଲିଯିବେ ।

ଏଇ ଭାବନାକୁ ଭାଙ୍ଗିଦେଇ ଆଶା ତା' କୋଡ଼ରେ ବହିଯାଇ କହେ—କଣ ଭାବୁଛ ଶରତ ଭାଇ ! ଜାଣିଛ ଯେ, ନୂଆବୋଉ କଥା, ନୁହେଁ ?

ଶରତ ଭାବନା ରାଇଜରୁ ଫେରିଆସି ଆଶାର ମୁହଁକୁ ଚାହେଁ । କି ସୁନ୍ଦର ନାଲି ଟୁହୁଟୁହୁ ମୁହଁଟି, ଠିକ୍ ନିରୁ ପରି । ଆଖିରେ ସେହି ସରଳତାର ଆଭା । ନିରୁ ଭାବି ଖୁବ୍ ଆନନ୍ଦରେ ତାକୁ ଗେଲ କରି ଦଏ । ଆଶା ସେହି ଗରମ ଚୁମ୍ବନରୁ କି ପରଶ ପାଏ କେଜାଣି, ଗୋଟାଏ ନୂଆ କଥା ଜାଣିଲା ପରି ଭାରି ଆଗ୍ରହରେ ଆବାକାବା ହୋଇ ଶରତ ମୁହଁକୁ ଚାହେଁ ।

ଇମିତି ଦିନ ଗୁଡ଼ିକ କଟେ ସ୍ୱପ୍ନ ପରି ।

   

ମଦନବାବୁ ମଲାଦିନୁ ତାଙ୍କର ସୁନାର ସଂସାର ଚୂନା ହୋଇ ଯାଉଛି । ଘର ଠାରୁ ବାହାର ପର୍ଯ୍ୟନ୍ତ ହତଶ୍ରୀର ମଳିନ ଛାୟା । ନିରୁ ବୋଉ ଦିନ ରାତି ନିରୁ କଥା ଭାବି ଭାବି ତାଙ୍କର ହାଡ଼ରୁ ମାଂସ ଝଡ଼ି ପଡ଼ିଲାଣି । ଆଉ ନିରୁ, ତା' ଅବସ୍ଥା କହିଲେ ନ ସରେ । ଏଇ କେଇଟା ଦିନ ଭିତରେ ତାର ଆଗ ରୂପ କିଛି ଆଉ ନାହିଁ । ଢଳଢଳ ଆଖି ଯୋଡ଼ିକ କେଉଁ ଗହ୍ୱରକୁ ପଶି ଯାଉଛି । ସତେଜ ଗୋଲାପି ଚିବୁକଟି ଶୁଖି କଳା । ଆଖିରେ ସେ ଆନନ୍ଦ ଆଉ ସରଳତାର ଆଭା

ନାହିଁ । ସାରା ମୁହଁଟିରେ ଫୁଟିଛି ଗୋଟାଏ ଭୟ, ନିରାଶାର କରୁଣ ଚିହ୍ନ ।

ଆଜ କାଲି ସେ ଭଲକରି ଗଣ୍ଡାଏ ଭାତ ଖାଏ ନାହିଁ, ମୁଣ୍ଡରେ ତେଲ ଲଗାଏ ନାହିଁ । ମଇଳା ଲୁଗା ଖଣ୍ଡିଏ ପିନ୍ଧି ଗୋଟେ ଝରକା ବାଟେ ଅନାଇଁଥାଏ ବାହାରକୁ । ତାର ସଜଳ ଅଖି ଯୋଡ଼ିକ ଶରତ ଉଦ୍ଦେଶ୍ୟରେ ମିଶି ଯାଇଥାଏ ଦିଗ୍‌ବଳୟ ଶେଷ ସୀମାରେ । ଦିନ କେତେବେଳେ ଯାଏ ରାତି କେତେବେଳେ ଆସେ ସେ ଜାଣିପାରେ ନା । ମା'ବି ତାକୁ କିଛି କୁହନ୍ତି ନାହିଁ । ସଞ୍ଜବତୀ ଦେଇ ଧୂପ ଦେଇ ଘର ଭିତରକୁ ପଶି ଆସି ଦେଖନ୍ତି ନିରୁ ପଥରଟି ପରି ଅବାକ ହୋଇ ବସିଛି । ତା' ଆଖିରୁ ଲୁହ ଧାର ଧାର ହୋଇ ଗଡ଼ି ପଡ଼ୁଛି । ତାଙ୍କର ସ୍ନେହର ନିରୁଟିକୁ ଏପରି ଅବସ୍ଥାରେ ଦେଖି ତାଙ୍କ ମନ ଆଉ ଥୟ ଧରେ ନାହିଁ । ତା' ପାଖରେ ବସିପଡ଼ି ଲୁଗା କାନିରେ ଲୁହ ପୋଛି ଦେଇ କହନ୍ତି—ମା'ଟି ମୋର, ତୋ କରମ ! କାନ୍ଦିଲେ କଣ ହେବ ! ମୋ ରାଣ, ଆଖିରୁ ଆଉ ଲୁହ ଗଡ଼ାନା । ନ ଖାଇ ନ ପିଇ ଝିଅଟା ମୋର କ'ଣ ହେଲଣି ! ଭେକରେ ପେଟ ଲାଗି ଯାଉଛି । ଆ ନିରୁ, ଗଣ୍ଡାଏ ଖାଇଦେ ଭଲା ! ଯଦି ଯଦି ମା' ବୃନ୍ଦାବତୀ ଥିବ, ସବୁ କଥା ବୁଝିବ । ହେ ଭଗବାନ ! ଆମକୁ ଯିଏ ଜଳାଇ ପୋଡ଼ାଇ ମାରୁଛି, ସେ ତା ସାତଜନମ ଯାକ ଜଳି ପୋଡ଼ି ମରୁ । ହେ ମା' ମଙ୍ଗଳା, ଶରତକୁ ଆଇଷ ଦେଇଥାଅ । ତାର ମଙ୍ଗଳ ହେଉ । ସେ କ'ଣ ଜାଣିଥିବ ଏ କଥା, ଜମାରୁ ନୁହେଁ । ସବୁ ଯାଙ୍କର ଫିକର । ଇମିତ ବାଇଆଣୀ ପରି କେତେ କଣ ଗପି ନିରୁକୁ ଟାଣନ୍ତି—ଆ ଭଲା, ମତେ ଆଉ ଚିଡ଼ାନା ।

ନିରୁ ଲୁଗା କାନିରେ ଲୁହ ପୋଛି ଉଠି ଆସେ । କଣ ଗଣ୍ଡାଏ ଖାଏ କି ନାହିଁ ସଜପ ଖଣ୍ଡେ ପକାଇ ଶୋଇପଡ଼େ । ଆଖିକୁ ନିଦ

ଅଟେସନା । ସବୁବେଳେ କାନ ଡେରିଥାଏ, ବେଳେବେଳେ ଶରତ ଭାଇ ଅସି ଡ଼ାକିଦେବ କି ! ରାତିଟା ବୃଥା ଯାଏ, ପୂରୁବ ଆକାଶରେ ସୁନ୍ଦର ଫାଟେ । କିନ୍ତୁ ଶରତ ଅଟେସ ନାହିଁ, ନିଦ୍ରର ଲହରେ ଡକିଆ ଓଦା ହୁଏ । ଇମିତି ହା-ହୁତାଶ ହୋଇ କଟିଗଲା କେତୋଟି ମାସ ।

   

ଚଇତ ଗଲା ବଇଶାଖ । ଶରତର ଆନନ୍ଦର ସୀମା ନାହିଁ । ଗୁହଆଡ଼େ ଜଙ୍ଗଲ ଛଣପଟ ଫୁଲ—ଶରତର ମନରେ ଉଜ୍ଜଳ ଆଶାର ଫୁଲ । ମନ୍ଦିରେ ଆଜ କେଇଟା ଦିନ । ତା'ପରେ ଶରତ ଆନନ୍ଦରେ କିଛି ଭାବ ପାରେ ନାହିଁ ।

ସେଦିନ ଭାରି ଟାଣ ଖରା ହୋଇଥାଏ । ଗରମ ଦେବତାର ନିଶ୍ୱାସରେ ଯେମିତ ଦୁନିଆଟା ପୋଡ଼ି ଜଳି ଯିବ । ପୁଷ୍ଟାଗ୍ରୀ ଗୃହର କଏ କେଉଁଠି ଶୋଇ ପଡ଼ିଛନ୍ତି । ଏଡ଼େ ବଡ଼ ରାସ୍ତାଟା ଜନଶୂନ୍ୟ । ଦଣ୍ଡେ ପହରକେ ଘୋଡ଼ାଗାଡ଼ିଟା କି ମଟର ଗାଡ଼ିଟା ଧୁମିଆ ହୋଇ ଯେମିତ ଦଉଡ଼ି ପଳାଇଥାନ୍ତି । ଶରତ ଯାଇ ବିଛଣାରେ ଶୋଇଲା । ଗରମ ଲାଗି, ଝାଳ ଗମଗମ ବୋହୁ ଅଉ ନିଦ ହେଲନାହିଁ । ସୀତାରାଟି ଧରି ଝରକା ପାଖରେ ବସିଲା । ଗରମ ପବନ କାଁଣ କେଉଁଠି ହଜାଇ ଝରକା ଦେହରେ ମୁଣ୍ଡ କଚୁଡ଼ି କାନ୍ଦୁଥାଏ । ଶରତ ସୀତାରାରେ ଟିପ ଦେଲା । ତାର ଗୁଡ଼ାକ ଥରି ଉଠିଲେ—ଗୋଟାଏ କରୁଣ ଅଉ ଦରଦୀ ସ୍ୱରରେ । ଶରତ ନିଜ୍ଜ କଥା ଭାବୁଥାଏ—ଆଜ ସୀତାର ବଜାଉଥାଏ । ଯେଉଁଠେ ଚକ୍ରବାଳର ସୀମା ଶେଷ ହୋଇଛି ସେଇଠି ତାର ଆଖି-ଯୋଡ଼ିକ ସ୍ଥିର ।

ବେଳେ ବେଳେ ଶରତର ଅଖି ଫେରିଆସେ ଚଟିଗୁ ଭିତରକୁ । କହୁତ ଟୋଲପ ଫୁଲ ଫୁଟିଥାଏ । ଖରା ତେଜ ସହି ନପାରି ଗୋଲପ

-ସୁନ୍ଦରୀ ଗୁଡ଼ିକ ମୁଣ୍ଡ ଝୁଙ୍କାଇ କଥାବାର୍ତ୍ତା ହେଉଥାନ୍ତି । ଏତିକିବେଳେ କେଉଁଠୁ ଗୋଟାଏ ବଦରସିକ କାଳିଆ ଭଅଁର ଏଡ଼େବଡ଼ ନିରାଟ ଖରାଟାରେ ମନ ଭୁଲାଣିଆ ଗୀତ ଗାଇ ଗାଇ ଉଡ଼ି ଆସେ । ତାକୁ ଦେଖି ଗୋଲାପ କୁମାରୀ ଗୁଡ଼ିକ ଥରଥର ହୁଅନ୍ତି । ଲାଜ ସରମ ଛାଡ଼ି ଧିଟ ଭଅଁରଟା ଗୋଲାପରାଣୀର କାନ ପାଖରେ ଗୁଣୁଗୁଣୁ ହୋଇ ଚୁମ୍ବନ ଆଶାରେ କେତେ କାକୁତି ମିନତି କରେ । ଫୁଲ କିଶୋରୀଟି ଲାଜ ଲାଜ ହୋଇ ଉପର ମନରେ ମୁଣ୍ଡ ହଲାଏ । ଏହାଦେଖି ଭଅଁରଟି ଖୁବ୍ ହସେ । ତା' ନାଗର ପଣିଆ ଦେଖାଇ କିଶୋରୀର ଗୋଲାପି ଅଧରରେ ମୁହଁ ଲଗାଇଲାକ୍ଷଣି ସେ ଆନନ୍ଦରେ ଟିପି ଟିପି ହସେ । ଟିକିଏ ରହି ଭଅଁରଟା ଅନ୍ୟ ସଖୀ ପାଖକୁ ଉଡ଼ିଗଲାବେଳେ କିଶୋରୀଟି ରାଗ ଆଉ ଅଭିମାନରେ ଜଳିଯାଏ । ବଡ଼ ସଙ୍କୋଚରେ ଗୃହଆଡ଼କୁ ଥରେ ଅନାଏ—କାଳେ କିଏ ଦେଖିଲା କି ! ଶରତ ଏହା ଦେଖୁ ଦେଖୁ ଚମକି ପଡ଼େ—କାଳେ ଯଦି କିଏ ତାର...... ।

ତନ୍ଦ୍ରାଟା ଭାଙ୍ଗିଲା । ଶରତ ସେମିତି ସୀତାର ବଜାଇ ଚାଲିଥାଏ । ଡାକ ପିଅନ ଆସି ଦୁଆର ମୁହଁରେ ଡାକିଲା—ରେଜେଷ୍ଟ୍ରି, ବାବୁଙ୍କୁ ଡାକିଦିଅ ।

ଶରତ ସୀତାରଟା ଟେବୁଲ ଉପରେ ଥୋଇଦେଇ ବାହାରକୁ ଆସିଲା । ଡାକପିଅନ କହିଲା—ଟଙ୍କା ଆଉ ଚିଠି । ଶରତର ସେତେ-ବେଳକାର ଆନନ୍ଦ କହିହେବ ନାହିଁ । ଚିଠି ଖଣ୍ଡିକ ପକେଟରେ ପୂରାଇ ଦୁଇଶ ଟଙ୍କା ଗଣି ନେଲା । ଡାକ ପିଅନକୁ ଗୋଟିଏ ଟଙ୍କା ବକ୍‌ସିସ ଦେଇ ଭିତରକୁ ଗଲା । ଟଙ୍କାକୁ ମୁଣ୍ଡ ଉପର ତକିଆ ତଳେ ରଖି ଚିଠିଟିକୁ ଗୋଟିଏ ଚୁମ୍ବନ ଦେଇ ଖୋଲିଲା ।

କଲ୍ୟାଣୀୟ ଶରତ,

ମୋର ଓ ତୋ ଖୁଡ଼ୀର ଆଶୀର୍ବାଦ ଗ୍ରହଣ କରିବୁ । ଖର୍ଚ୍ଚ ପାଇଁ ଦୁଇଶ ଟଙ୍କା ପଠାଇଲି । ଏ ଚିଠି ଲେଖିଲା ବେଳକୁ ମୋର ହୃଦୟ ଫାଟି ପଡ଼ୁଛି । ତୋ ଖୁଡ଼ୀ ବି ମୁଣ୍ଡ ପିଟିଦେଇ ଏପର୍ଯ୍ୟନ୍ତ ଭଲ ହୋଇ ନାହିଁ । ମଦନବାବୁଙ୍କ ସଙ୍ଗରେ ଆମର ମହାପ୍ରସାଦ ଉଠା ସରିଥିଲା । ସେ କାହା ଶିକ୍ଷାରେ ପଡ଼ିଲେ କେଜାଣି ନିରୁଟିକୁ ଗୋଟିଏ ଦୋବେଇ ବରକୁ ଟଙ୍କା ନେଇ ବିବାହ କରି ଦେଇଛନ୍ତି । ନିରୁଟି ବିବାହର ଦୁଇଦାନ ପରେ କଣ୍ଟାଅର ମଞ୍ଜି ବାଟି ପିଇ ଦେଇଥିଲା । କେତେ ଔଷଧପତ୍ର ଖାଇ ଭଲ ହୋଇଛି ବୋଲି ଶୁଣିଲି । ମୋ ବାପାଟା, ମନରେ କଷ୍ଟ କରିବୁ ନାହିଁ । ମୁଁ ଭଲ କନ୍ୟା ଖୋଜୁଛି । ଠିକ୍ ହେଲେ ତୋ ପାଖକୁ ଚିଠି ଦେବି । ଆଉ ଟଙ୍କା ଦରକାର ହେଲେ ଲେଖିବୁ । ଘରକୁ ବର୍ତ୍ତମାନ ଆସିଲେ ଲାଭ କଣ । ସମସ୍ତେ ମଙ୍ଗଳରେ ଅଛନ୍ତି ।

ତୋର ଶୁଭାକାଂକ୍ଷୀ
ଶ୍ୟାମସୁନ୍ଦର

ଶରତ ଚିଠିଖଣ୍ଡିକ ପଢୁ ପଢୁ ତା' ଛାତିଟା ଖୁବ ଜୋରରେ ଦମ୍ ଦମ୍ ପଡ଼ିଲା । ଦେହରୁ ଝାଳ ଗମ୍‌ଗମ ହୋଇ ବହି ଯାଉଥାଏ । ତାକୁ ଜଣା ଯାଉଥାଏ ସେ ଯେମିତି ଗୋଟାଏ ମଣିଷ ନୁହେଁ—କାଠ କି ଆଉ କ'ଣ ! ତା' କଲିଜାଟାରେ ସେତେବେଳକୁ କିଏ ଗୋଟାଏ ମୁନିଆ ଛୁରିରେ ଦୁଇ ତିନିଥର ଭୁଷି ଦେଇ ଗଲାଣି । ଆଉ ମୁହୂର୍ତ୍ତିକ ପରେ ଯେମିତି ତା ଜୀବନ ଛାଡ଼ି ଯିବ । ଆଉ ପଢି ପାରିଲା ନାହିଁ, ଚକ୍ଷୁ ଆଡ଼େ ଘୋର ଅନ୍ଧାର ଦେଖାଗଲା । ସେହି ଅନ୍ଧାର ଭିତରେ ତା' ଆଖିରୁ ଗୋଟାଏ ଟିକ ଶବ୍ଦ ନିଅଁ ବାହାରି କୁଆଡ଼େ ମିଳାଇ ଗଲା । ଧଳାକାଗଜ ଚିଠି ଖଣ୍ଡିକ ଦେଖାଗଲା ଯେପରି ଅଲକାତରା ମରା କଳା ପଥର ଖଣ୍ଡେ ।

ତା’ ପରେ ସେ ସେଇଠି ମୁଣ୍ଡରେ ହାତ ଦେଇ ବସି ପଡ଼ିଲା । ଆଖିରୁ ଲୁହ ଝରିଲା ନାହିଁ କି ଅନ୍ତରରୁ କୋହ ଉଠିଲା ନାହିଁ । ସତେ ଯେପରି ସେ’କାଳର ଯୁଗର ମଣିଷ । କଣ ଭାବୁଥିଲା କି ନାହିଁ, କେବଳ ଦଣ୍ଡେ ପହରକେ ଗୋଟାଏ ଦୀର୍ଘ ନିଶ୍ବାସ ଛାତି ପିଞ୍ଜରାଟାକୁ ହଲାଇ ବାହାରି ଆସୁଥାଏ ।

ଗୁଳକରଣି ଲଣ୍ଠନଟା ଥୋଇଦେଇ ଡ଼ାକିଲା—ବାବୁ, ବାବୁ, ସେମିତି ବସିଛନ୍ତି କାହିଁକି ? ଦେହ କ’ଣ ହେଉଛି ନା କଣ ? ପୁଅଟାଏ ଭଲଖିଆ ଆଣି ଡ଼ାକି ଡ଼ାକି ଗଲା । ଆସନ୍ତୁ ଖଣ୍ଡେ କ’ଣ ଖାଇଦେବେ । ଆଜ କୁଆଡ଼େ ବୁଲି ଯାଆନ୍ତୁ ନାହିଁ । ଅଗଣାରେ ଖଟ ପକାଇ ଦିଏ, ଶୁଅନ୍ତୁ । ମୁଣ୍ଡ ଟିକିଏ ଚିପି ଦେବି ।

ଶରତ କିଛି କହିଲା ନାହିଁ । ସେମିତି ବସିଥାଏ ।

ଗୁଳକରଣି ହଲାଇ ପକାଇ ବଡ଼ ବିସ୍ମିତ ହୋଇ କହିଲା—ବାବୁ, ବାବୁ, କ’ଣ ହୋଇଛି କି ?

—କିଛି ନାହିଁ, ପାଣି ଟୋପା ଆଣିଲୁ ଟିକେ ।

ଗୁଳକରଣା ଭିତରକୁ ପାଣି ପାଇଁ ଗଲା, ଶରତ ପାଗଳଙ୍କ ପରି ପାଠାଗାରଟାକୁ ଫୋପାଡ଼ି ଦେଇ ଭିତର ଆଡ଼କୁ ପଶିଗଲା ବେଳେ ଟେବୁଲ ଉପରେ ହାବୁଡ଼ିଗଲା । ତା’ ଉପରେ ଥୁଆ ହୋଇଥିବା କାଚ ଫୁଲଦାନୀ ଦୁଇଟି ତଳେ ପଡ଼ି ଚୂରମାର ହୋଇଗଲା । ଶରତ ସେଇଠି ହାମୁଡ଼େଇ ପଡ଼ିଥାଏ । ଗୁଳକରଣା ଦଉଡ଼ି ଯାଇଁ ଉଠାଇ ପକାଇ ପଚାରିଲା—ଦେହ କଣ ହେଉଛି ବାବୁ, ମତେ ଲୁଚେଇଛ କାହିଁକି ଭଲା ।

—କିଛି ନା, ମତେ ପାଣି ଦେଲୁ ।

ଗୁଳକରଣି ଅଗଣାରେ ଗୋଟିଏ ଖଟିଆ ପକାଇ ଦେଇ ଶରତକୁ ଧରି ଖଟ ଉପରେ ଶୁଆଇ ଦେଇ କହିଲା—ଜଣେ ଡ଼ାକ୍ତରଙ୍କୁ ଡ଼ାକେ ।

—ନା।

—ଦେହ କଣ ହେଉଛି ?

—ନା।

ଶରତ ଖଟିଆରେ ଶୋଇ ଅନାଇଁଲା ଆକାଶକୁ। ଆଗପରି ଠିକ୍ ଜହ୍ନର ଧଳାକଳା ବଉଦ ପଛରେ ସେମିତ ଦଉଡ଼ା ଦଉଡ଼ି ଖେଳ। କିନ୍ତୁ ଜହ୍ନ ଆଜି ଠିକ୍ ଖେଳୁ ନାହିଁ, ତାକୁ ଥଣ୍ଡା କରି ବଉଦ ଉହାଡ଼ରେ ମୁହଁ ଲୁଚାଇ ହସୁଛି।

ଶରତକୁ କିଛି ଭଲ ଲାଗିଲା ନାହିଁ। ବିଛଣାରେ ପଡ଼ି ସେମିତି ଛଟପଟ ହେଉଥାଏ। ହଠାତ୍ ତାର ଗୋଟାଏ କଣ ଖିଆଲ ଆସିଲା କେଜାଣି, ଗୁରୁକର ହାତଟାକୁ ଧରି ପଚାରି କହିଲା—ମୋ କଥା ମାନିବୁ ଧନା !

ଧନା ବଡ଼ ଅବାକ୍ ହେଲାପରି କହିଲା—ଆପଣଙ୍କ କଥା ମାନିବି ନାହିଁ ତ ଆଉ କାହା କଥା ମାନିବ ବାବୁ !

—ତେବେ ସାମାନ୍ୟ କିନିଷପତ୍ର ବାନ୍ଧ।

—କୁଆଡ଼େ ଯିବେ ବାବୁ, ଘରକୁ ?

—ତୋତେ ଏତେ କଥା କିଏ କହୁଛି ? ମୁଁ ଯୁଆଡ଼େ ଯିବି, ତୁ ସିଆଡ଼େ ଯିବୁ। କଲମ କାଗଜ ଖଣ୍ଡେ ଆଣିଲୁ। ଧନା କାଗଜ ଖଣ୍ଡେ ଆଉ କଲମଟା ଆଣିଲା।

ଶରତ ଆଖିରୁ ଲୁହ ଗଡ଼ାଇ ଲେଖିଲା —

ଭାଇ ବସନ୍ତ,

ମୋ ଚିଠି ଦେଖି ତୁ ବିସ୍ମିତ ହେବୁ ସତ, କିନ୍ତୁ ବିଶ୍ୱାସ ଥାହିଲେ ଆସି ଦେଖିବୁ, ମୁଁ ଆଉ ଏଠି ନାହିଁ। ମୁଁ ଆଜି କୁଆଡ଼େ ଯାଉଛି, କାହିଁକି ଯାଉଛି, ସେକଥା ଜାଣି ତୋର ଲାଭ କ'ଣ ? ଏ ଜନମରେ ଆଉ ଦେଖା ହେବ କି ନାହିଁ ସନ୍ଦେହ। ଘରର ସମସ୍ତ

ଜନପ୍ରତି ପାଞ୍ଚ ଟଙ୍କା ମୋର ଟେବୁଲ ଉପରୁ ନେବୁ। ସେ ସବୁ 'ଅଣା'ର ବିବାହରେ ଖର୍ଚ୍ଚ କରିବ। ସମସ୍ତଙ୍କୁ ମୋ କଥା ଜଣାଇ ଦେବୁ। ଏ ହତଭାଗାକୁ କେହି ମନେ କରିବ ନାହିଁ।

ତୋଷ ହତଭାଗ୍ୟ ଭାଇ,

ଶରତ

ଶରତ ପୁଷ୍ପାଙ୍କୁ ଡାକି କହିଲା—କାଲି ସକାଳେ ଏ ଚିଠି ଖଣ୍ଡିକ ବସନ୍ତ ବାବୁଙ୍କ ଘରେ ଦେଇ ଆସିବୁ। ମୁଁ ଜରୁରୀ କାମରେ କଲିକତା ଯାଉଛି।

ଦୁଇଟା ତିରିଶ ମିନିଟରେ ଡାକ ଗାଡ଼ି। ଷ୍ଟେସନଟା ଗୋଳମାଳରେ ପୂରି ଉଠିଲା। କେତେ ଦେଶର ଲୋକ କିଏ କୁଆଡ଼େ ଯିବା ପାଇଁ ଅପେକ୍ଷା କରି ରହିଥାନ୍ତି। ଶରତ ବେଞ୍ଚଖଣ୍ଡାକୁ ଆଉଜି ବସିଥାଏ। ତା'ର ଆଖି ଦେଇ ଯୁବତୀଟିଏ ତାର ସ୍ୱାମୀ ହାତ ଧରି ଗପସପ ହୋଇ ଚାଲିଗଲା। ଶରତର ଛାତି କରତ ହୋଇ ଆଖିରୁ ଦ'ଧାର ହୋଇ ଲୁହ ଗଡ଼ି ଆସିଲା। ପକେଟରୁ ରୁମାଲଟା ବାହାର କରି ଲୁହ ପୋଛିଦେଇ କୋହକୁ ଚାପି ରଖିବା ପାଇଁ ପୁଣି ରୁମାଲଟା ପାଟିରେ ପୂରାଇ ରଖିଲା।

ଘଣ୍ଟା ବାଜିଲା ଠନ୍ ଠନ୍। ଗାଡ଼ି ଆସିବ ବୋଲି ସମସ୍ତେ ଅନାଇଁ ରହିଲେ। ପୁଣି ଘଣ୍ଟା ବାଜିଲା। କାହାଣୀ ରାଇକର ବ୍ରହ୍ମ-ସ୍ୱପ୍ନ ପରି ପ୍ରକାଣ୍ଡ ଗାଡ଼ିଟା ଫଁ ଫଁ ହୋଇ ଷ୍ଟେସନରେ ଅଟକିଗଲା। ସମସ୍ତେ ଗାଡ଼ିରେ ଚଢିଲେ। ଶରତ ଯନ୍ତ୍ର ଚାଲିଲାପରି ଚଢିଲା। ଚାକର ପଚାରିଲା—ଆମେ ଏ ଗାଡ଼ିରେ କୁଆଡ଼େ ଯିବା ବାବୁ ?

—ଏ ଗାଡ଼ିଟା ଯୁଆଡ଼େ ଯିବ।

ତା'ପରେ କେତେ ବୁଢ଼ା ବୁଢ଼ୀ, ଯୁବକ ଯୁବତୀମାନଙ୍କୁ ଧରି ଗାଡ଼ିଟା କୁହାଟ ମାରି ଚାଲିଲା ତା ପଥରେ। ଶରତ ଶେଷଥର ପାଇଁ

ଝରକା ବାଟେ ଅନାଇଁଲା ଏତେଦିନର ପରିଚିତ ପାଠଶାଳା ସହରକୁ । ତା'ଅଜାଣତରେ ଆଖିରୁ ଦି'ଧାର ଲୁହ ଗଡ଼ି ପଡ଼ିଲା । କିନ୍ତୁ କ୍ଷଣକରେ ଏତେବଡ଼ ସହରଟା ଗଛପତ୍ରର ଉହାଡ଼ରେ ଲୁଚିଗଲା । ଶରତ ସେମିତି ବାହାରକୁ ଅନାଇଁଥାଏ ।

× × × ×

କାଳର କଳାଡୋରରେ ମାଳି ପରି ଦିନ, ମାସ, ସପ୍ତାହ ଗୁନ୍ଥା ହୋଇ ବିତିଗଲା ପୋଡ଼ିଏ ବରଷ ।

ଏଣେ ନିରୁର ଅବସ୍ଥା କହିଲେ ନ ସରେ । ଅଜକୁ ମାସେ ହେବ ତାକୁ କି ଜର ଧରିଛି କେଜାଣି, ଯେତେ ଔଷଧପତ୍ର, ଜଡ଼ି ମଳି ଦେଲେ ସୁଦ୍ଧା ଛାଡ଼ିବାକୁ ନାହିଁ । ନିରୁ ବୋଉ, ଘରେ ଯାହା ଜିନିଷପତ୍ର ଥିଲା ସବୁ ବିକି, ଶେଷକୁ ହରି ମିଶ୍ରଙ୍କ ପାଖରେ ଘରଡ଼ିହ ଖଣ୍ଡିକ ବନ୍ଧା ପକାଇ ପଚିଶଟି ଟଙ୍କା ଆଣିଥିଲେ । ସେତକ ବି ସରି-ଗଲାଣି । ଯେତେ ଚେଷ୍ଟା କଲେ ସୁଦ୍ଧା ଜର ଟିକିଏ ଭଲ ହେଉ-ନାହିଁ । ଅଜକୁ ଅଠଦିନ ହେଲା ରୋଗଟା ବଢିଛି ଓ ରୋଗୀ ବାତୁଳା ପରି ଗପୁଛି—"ଦେଖିବ ଶରତ ଭାଇ, ଛବିଟା କିମିତି ଚିରି ଟିକିଟିକି କରି ପକାଇଦେବି ! ମତେ ଠେଲିଦେଲ, ଦେଖିଲ ମୋ ଛବିରେ କିମିତି ପେନ୍‌ସିଲ ଗାରଟା ଟାଣି ହୋଇଗଲା ।" ଇମିତି କେତେବେଳେ କ'ଣ ଯେ ଗପୁଛି ତାର ଠିକ୍ ନାହିଁ । ନିରୁ ବୋଉ ତାର ଏପରି ଅବସ୍ଥା ଦେଖି କାନ୍ଦି କାନ୍ଦି ଗଡୁଥାନ୍ତି ।

ପଞ୍ଚ ପହର । ମଥୁରି ଅଜା ଦାଣ୍ଡ ଦୁଆରେ ବାଡ଼ି ଠକ୍ ଠକ୍ କରି ଡ଼ାକିଲେ—ନିରୁ ବୋଉ, ଝିଅ କେମିତି ଅଛି ?

ନିରୁ ବୋଉ ଭେ ଭେ ହୋଇ ଡକା ପକାଇ କହିଲେ—ମା' ମୋର ଆଉ ବଞ୍ଚିବ ନାହିଁ । ମୁଁ କୁଆଡ଼େ ଯିବି ଲୋ ! ମୋତେ ବୁଦ୍ଧି ବତା, ମୁଁ କଣ କରିବି କୁହ ।

ମହୁରି ଅଜା ଥକା ମାରି କହିଲେ—ନା ନବୁ ବୋଉ, ହିଅର ଅଉ ଏ ଔଷଧ ପତ୍ରରେ ଜର ଭଲ ହେବନାହିଁ । ଏ ମୂର୍ଖ ଗାମବାବୁ କଣ ଏଠିକୁ କାହାକୁ ଛାଡ଼ୁଛନ୍ତି । ଗାଁରେ ଡାଗଦା କରୁଛନ୍ତି, ଯିଏ ତାଂ ଦୁଆର ମାଡ଼ିବ, ସେ ଏକଘରିକିଆ ରହିବ । ସେ ଯେତେହେଲେ ବଡ଼ଲୋକ, ତାଂ କଥାରୁ କିଏ ବାହାରିପିବ ? ମନ୍ଦା ମୋର ଘଣ୍ଟି ହେଲା, ଦଉଡ଼ି ଅଇଲି । ଯାହା ହେବାର ହେବ, ଦେଖାଯିବ । ଅଜ ଶୁଣିଲି ଖଣ୍ଡଗିରିରେ ଜଣେ କିଏ ବାବାଜି ଆସି ଅଛନ୍ତି । ସେ ବେଶ୍ ଔଷଧପତ୍ର ଜାଣନ୍ତି ବୋଲି ଅର ଗାଁ ଗୋପୀ ପଧାନ କହୁଥିଲା । ତାର ଅଷାଢ଼ ବେମାରି ଭଲ ହୋଇ ଯାଇଛି । ଭାରି ଭଲ ବାବାଜି । ଘର ଭିତରେ ବସିଥାନ୍ତି । କିଏ ଯଦି ତାଙ୍କୁ କଣ ପଚାରେ, ତାହାହେଲେ କଥା କହନ୍ତି, ନୋହିଲେ ନାହିଁ । ଶୁଣିଲି, କୁଆଡ଼େ ଅନେକ ରୋଗୀ ଯାଇ ଭଲ ହୋଇ ଆସୁଛନ୍ତି । ସେଠି ରହିବାକୁ ବି ଘର ଅଛି । ମୋ କଥା ମାନ, ମୁଁ ଗୋଟାଏ ଶଗଡ଼ଗାଡ଼ି ଡ଼ାକି ଦେଉଛି, ସିଧା ସିଧା ସେଇଠିକୁ ଚାଲିଯାଅ । ଯାହା କରମରେ ଥିବ, କାହା ହାତର କଥା...... ।

ନବୁ ବୋଉ କହିଲେ—ଏତେ ତ କଲି, ଏଥର ଦେଖାଯାଉ ।

× × × ×

ତହିଁ ଆରଦିନ ବେଳ ଉଠଉଠ ନହେଉଛି । ଶଗଡ଼ ଗାଡ଼ି ଖଣ୍ଡିକ ଖଣ୍ଡଗିରିରେ ପହଞ୍ଚିଲା । ଚାରିଆଡ଼େ ଗଛ ପଥର, ଜଙ୍ଗଲ, ପାହାଡ଼ । ତା'ରି ଭିତରେ ଲମ୍ବା ଲମ୍ବା ଦୁଇଟା ଚାଳଘର । ଶଗଡ଼ିଆ କହିଲା—ଏଇ ହେଉଛି ବାବାଜିଙ୍କ ଆଶ୍ରମ ।

ବାହାରେ ଲୋକ ସାଡ଼ି ଶୁଣି ଭିତରୁ ଜଣେ ବାହାରି ଆସି କେଉଁଠୁ ଆସିଛନ୍ତି ବୋଲି କଥାବାର୍ତ୍ତା ହେଲେ । ପୁଣି ଭିତରକୁ

କଏ ଡାକିଲା—ଧାନବନ୍ଧୁ ରହିବାର ସୁବିଧା କର, ମୁଁ ପୂଜାରେ ବସିଲି ।

ସେହି ଲୋକଟି ଦୀପ ଲଗାଇ ଗୋଟିଏ ଗୁଳଘରକୁ ଆସିଲା । ଦଉଡ଼ିଆ ଖଟିଆ ଉପରେ ଧଳା ଚଦର ଖଣ୍ଡିଏ ପାରଦେଇ କହିଲା, ରୋଗୀକୁ ଏଇଠିକୁ ଆଣ । ବାବାଜି ପୂଜା ସାରିଲେ ଆସି ଦେଖିବେ । ବିଶ୍ୱାସ ରଖ ମା, କେତେ ବେମାର ଏଠି ଭଲ ହୋଇ ଯାଉଛି ।

ନିରୁ ବୋଉ, ଶଗଡ଼ିଆ ଓ ସେ ଲୋକଟି ନିରୁକୁ ନେଇ ବିଛଣା ଉପରେ ଶୁଆଇ ଦେଲେ । ନିରୁ ବୋଉ ତାର ପାଖରେ ବସି-ଥାନ୍ତି । ନିରୁର କରୁଣ ଚିତ୍କାରରେ ଘରଟି ଉଚ୍ଛୁଳି ପଡୁଥାଏ ।

ସନ୍ଧ୍ୟା ଗଡ଼ିଲା । ବାବାଜି ସେ ଘରକୁ ପଶିଯାଇ ଦୀପଟି ଟେକି ଦେଇ ରୋଗୀର ହାତର ନାଡ଼ିକୁ ଚିପି ଧରିଲେ । ଦୀର୍ଘ ଶାନ୍ତ ମୂର୍ତ୍ତି । ଗୋରା ତକତକ ଦେହ । ଧଳା ଦାଢ଼ି ଲମ୍ବ ଲମ୍ବ । ଉଦାସିଆ ଆଖି । କପାଳରେ ଦୀର୍ଘ ଟିକା । ଗେରୁଆ ଲୁଗା, ଆଉ ଗେରୁଆ ପଞ୍ଜାବୀଟା ଆଣ୍ଠୁ ପର୍ଯ୍ୟନ୍ତ ଲମ୍ବିଛି । ବେକରେ ଓ ବାହୁରେ ରୁଦ୍ରାକ୍ଷମାଳା, ଆଖି ଯୋଡ଼ିକ ସତେକି ଉଦାସିଆ, ସତେଅବା ସେ ମୁହଁରୁ ଗୋଟାଏ ତେଜ ବାହାରୁଛି ।

ରୋଗୀ ହଠାତ୍ ଗୋଟିଏ ଥଣ୍ଡା ହାତର ପରଶ ପାଇ, ତାର କରୁଣ ଚିତ୍କାର ବନ୍ଦ ହୋଇଗଲା । ବକବକ କରି ବାବାଜିଙ୍କ ଆଡ଼େ ଅନାଇଁ ଥାଏ । ବାବାଜି ହାତ, ଗୋଡ଼, ମୁଣ୍ଡ ଦେଖି କହିଲେ—ମା' ଆଉ ପାଟି କରନା, ପାଟିକଲେ ବେଶି ହେବ ଯେ, ମୁଁ ଔଷଧ ପଠାଇ ଦେଉଛି, ଖାଅ । ସବୁ ଭଲ ହୋଇଯିବ ଦି'ଟା ଦିନରେ । ସେହି ଭଗବାନଙ୍କ ଉପରେ ବିଶ୍ୱାସ ରଖ । ତା'ପରେ ରୋଗୀର ମା' ଆଡ଼କୁ ଅନାଇଁ କହିଲେ—ମା' ତୁମେ ଆଉ କାନ୍ଦ ନାହିଁ । ସବୁ ଭଲ

ହୋଇଯିବ । ତୁମେ ଖାଇ ସେଇଠି ଶୋଇପଡ଼ । ଅନେକ ଦିନରୁ ବୋଧହୁଏ ଅନିଦ୍ରା ହୋଇଛ । ଆଜି ନିଶ୍ଚିନ୍ତରେ ଶୁଅ, ବୈରାଗୀକୁ ମୋର ଲୋକ ଲାଗିବ ଯେ……

ଏତକ କହି ବାବାଜି ସେ ଘରୁ ଚାଲିଗଲେ । ବୈରାଗୀ ତାଙ୍କର ଆଡକୁ ଅନାଇଁ ରହିଲା । ବାବାଜି ଚାଲିଗଲା ପରେ ବୈରାଗୀ ଆଖିକୁ ଆଉ ନିଦ ଆସିଲା ନାହିଁ । କେତେ ଦିନର ପୁରୁଣା କଥା ସବୁ ତାର ମନେ ପଡ଼ିଗଲା । ବାବାଜି ତାର ଯେଉଁ ସ୍ଥାନଗୁଡ଼ିକ ଛୁଇଁ ଯାଇଥିଲେ, ସେହି ସ୍ଥାନଗୁଡିକ ତାକୁ ଅଲଗା ଅଲଗା ଲାଗିଲା । ତାର ଖାଲି ମନେ ପଡିଲା ଠିକ୍ ଏହିପରି ହାତର ପରଶ ତ ସେ ଅନେକଥର ପାଇଛି । ଇମିତି ଶରତ ଭାଇ ହାତର ପରଶ । ଏ ବାବାଜିର ଆଖି ଯୋଡିକ ଠିକ୍ ଯେପରି ତାର ଚନ୍ଦ୍ରା ଆଖି । ଠିକ୍ ତ ଇମିତ କଅଁଳ କଥା । ଭାବନା ବଦଳିଯାଏ । ଆକାଶ ପାତାଳ ପ୍ରଭେଦ । କାହିଁ ଶରତଭାଇ, କାହିଁ ବାବାଜି ।

ଦେଢ଼ବର୍ଷ ଭିତରେ ଏଠିକୁ କେତେ ରୋଗୀ ଆସିଛନ୍ତି, କେତେ ଭଲ ହୋଇ ଯାଇଛନ୍ତି । କେତେ ଏଇଠି ଚିରଦିନ ପାଇଁ ଧରାରୁ ବିଦାୟ ନେଇଛନ୍ତି, ବାବାଜିଙ୍କର ସବୁ ଦେହ ସହିଛି । କିନ୍ତୁ ଆଜି ଯେଉଁ ରୋଗୀଟା ଆସିଛି, ତା' ପାଇଁ ବାବାଜିଙ୍କ ମନ କାହିଁକି ଗୋଳେଇ ଘାଣ୍ଟି ହେଉଛି ସେ ବୁଝିପାରୁ ନାହାନ୍ତି । ରାତିରେ ଗଣ୍ଡେ ଖାଇ ଶୋଇଲେ, କିନ୍ତୁ ଆଖିକୁ ନିଦ ଆସିଲା ନାହିଁ । କେତେଦିନର ଚଞ୍ଚଳ ମନ ଅମାନିଆ ହୋଇ ଧାଇଁଲା ପୁରୁଣା କଥା ଭାବି । ତାଙ୍କର ଯେପରି ମନେହେଲା ଏ ବୈରାଗୀର ଆଖି ନୁଆ ଆଖି ନୁହେଁ, ଅନେକ ଦିନର ଚନ୍ଦ୍ରା ଆଖି । ଆଖିରେ ଠିକ୍ ତ ସେମିତି । କିନ୍ତୁ ଏମିତି କେତେ କ'ଣ ଭାବୁ ଭାବୁ ବାବାଜି ତାଙ୍କର ମନକୁ ଫେରାଇ ଭାବୁ

ଫେରୁଥାନ୍ତି । କିନ୍ତୁ ମନ ଠିକ୍ ହୋଇ ରହେ ନା । ପୁଣି ସେହି ଅଡ଼େ ଘୋଡ଼ା ଛୁଟିଲା ପରି ଛୁଟେ ।

ଇମିତି ଗୁଡ଼େରିଏ ଦିନ କଟିଗଲା । ରୋଗୀ ଭଲ ହେବା ଦୂରେ ଥାଉ, ରୋଗଟା ବେଶି ବେଶି ବଢ଼ୁଛି । ବାବାଜି ଦିନ ମଧ୍ୟରେ ଦୁଇ ଥର ଆସି ଦେଖି ଭଲ କରି ପରୀକ୍ଷା କରୁଥାନ୍ତି ରୋଗ ଠଉରିବାକୁ, କିନ୍ତୁ ପାରନ୍ତି ନାହିଁ । ହତାଶ ହୋଇ ଫେରନ୍ତି । ଏହି ଗୁଡ଼ାଏଟି ଦିନ ମଧ୍ୟରେ ବାବାଜୀଙ୍କର ମନର ଧାରଣା ମଧ୍ୟ ବଦଳି ଯାଇଛି । ପୂଜା କରିବାକୁ ମନ ଲାଗୁନାହିଁ । ରୋଗୀଟାକୁ ଦେଖି ସବୁବେଳେ ସେହି ପୁରୁଣା କଥାଗୁଡ଼ାକ ମନେ ପଡ଼ୁଛି । କିଛି କଥା ଭାବି ସ୍ଥିର କରିଛି ହୋଇ ଯାଉଛି ।

ତହିଁ ଆର ଦିନ ବାବାଜି ସକାଳେ ଭଲକରି ପରୀକ୍ଷା କରି କିଛି ବୁଝି ନ ପାରି ହତାଶ ହୋଇ ଫେରିଛନ୍ତି । ଖାଇବା ପିଇବାରେ କିଛି ସୁଖ ଲାଗୁ ନ ଥାଏ । ମନଟା ଖାଲି ଦଉଡ଼ୁ ଥାଏ ରୋଗୀଟାର ସେହି ଆଖି ଯୋଡ଼ିକର ଗୁହାରି ପାଖକୁ ।

ସେଦିନ ବାବାଜି ପୂଜା ସାରି ମନ ବ୍ୟସ୍ତରେ ପିଢ଼ାରେ ଦାଉଡ଼ିଆ ଖଟିଟି ଉପରେ ବସିଥାନ୍ତି । ଆକାଶରେ ଅଗପଛ କଳାହାର ଦଉଡ଼ା ଦଉଡ଼ି ଚାଲିଲା । ତିନି ବରଷ ଭିତରେ ଟିକିଏ ହୁଡ଼ି ବଦଳିନାହିଁ । ତାଙ୍କର ମନେ ପଡ଼ିଲା—ଇମିତି ଗୋଟାଏ ରାତି, ଯେଉଁ ଦିନ ସେ ସେ ଦାଦି ପାଖରୁ ଚିଠି ପାଇଲେ, ସେଇ ଦିନ ଠିକ୍ ଇମିତି । ପାଟଣା ସହରକୁ ଛାଡ଼ି ଆସିଲେ । ସେ ଦିନର ମନର ଅବସ୍ଥା ଭାବି ତାଙ୍କର ହୃଦୟ କାନ୍ଦି ଉଠିଲା । ଆଖିରୁ ଲୁହ ଗଡ଼ି ପଡ଼ିଲା । ନିଜ ଗେରୁଆ ଲୁଗାରେ ଲୁହ ପୋଛିଦେଇ ପୁଣି ସେହି ଅନନ୍ତ ଆକାଶକୁ ଚାହିଁ ରହିଲେ । ପିଲା ଦିନର ଗୋଟି ଗୋଟି କଥା ତାଙ୍କ ମନରେ ପଡ଼ିଗଲା ।

କାରୁ ସଙ୍ଗରେ ଛବି ଅଙ୍କିବା, ଦାଣ୍ଡରେ ଲଗାଲଗି ହୋଇ ବସି ଗୀତ ଶୁଣିବା, ଅଭିମାନରେ ତା' ସଙ୍ଗରେ କଥାବାର୍ତ୍ତା କରିବା । କିନ୍ତୁ କେଉଁବର୍ଷ ଭିତରେ—ଜୀବନରେ କେତେ ଫରକ—କେତେ ପରି-ବର୍ତ୍ତନ । କାରୁ, ସେ ଯାଇ ଆଜି ଅନ୍ୟର, ଆଉ ସେ, ଏହି ନିର୍ଜନ ଭୂଇଁରେ ଏକାକୀ । ଇମିତି କେତେ କଥା ସିନେମା ଛବି ପରି ଚେଗ ତାଙ୍କ ପରେ ଗୋଟାଏ ଆସି ଭାସି ଯାଉଥାଏ ।

ଏତିକିବେଳେ ତାଙ୍କର ଦୀନବନ୍ଧୁ ଡାକିଲା ଆସିଲେ ଠିକ୍‌ଏ, ରୋଗୀଟାର ଅବସ୍ଥା ଜମା ଭଲ ନୁହେଁ । କିଏ ଗୁଡ଼ାଏ ଆଜି ପାଗଳଙ୍କ ପରି ଗପି ହେଉଛି । ମୋର ଆଉ ବେଶିହେଲେ ପାହାନ୍ତା ପହର ଟପିବ କି ନାହିଁ । ଏକଥା ଶୁଣି ବାବାଜିଙ୍କର ଛାତିଟା ଦପ୍ ଦପ୍ ହୋଇ ପଡିଲା । ଦୁନିଆଟା କେମିତି ତାଙ୍କୁ ଅସାର ବୋଧ ହେଲା । ଖଡ଼ମ ମାଡ଼ି ତା' ପଛେ ପଛେ ଯାଇ ରୋଗୀ ପାଖରେ ବସିଲେ । ରୋଗୀର ମୁଣ୍ଡରେ ହାତମାରି ଦେଖିଲେ—ଏ ତ ଶେଷବେଳ, ଆଉ ବେଶି ସମୟ ନୁହେଁ । ଏ ଗପିବା ଗୋଟାଏ ଖିଆଲ—ଗୋଟାଏ ଦୋଷ ମାନ । ବାବାଜି ତା'ପରେ କୁଡ଼ିଆ ଭିତରକୁ ଯାଇ ଔଷଧ ଟିକିଏ ଆଣି ପାଟିରେ ଦେଲେ । କିଛି ସମୟ ପରେ ରୋଗୀର ଅବସ୍ଥା ଟିକିଏ ବଦଳିଗଲା । ବାବାଜି ମୁଣ୍ଡ ପାଖରେ ବସି ତା' ମୁଣ୍ଡ ଆଉଁସୁ ଆଉଁସୁ କହିଲେ—ମା' କପରି ଲାଗୁଛି ଆଜି ? ମୁଁ ତ ବହୁତ ରୋଗୀ ଭଲ କରିଛି—କିନ୍ତୁ ତୁମ ପରି······

ରୋଗୀକୁ ଏ ହାତର ପରଶ ଯେପରି ଭାରି ଭଲ ଲାଗୁଥିଲା । ସେ ଚୁପ ହୋଇ ଶୋଇଥାଏ । ପୁଣି ଥରେ ବାବାଜି ପଚାରିଲେ, କପରି ଲାଗୁଛି ମା', ରୋଗୀ ଆଖି ଖୋଲି ଖନ ଖନ କରି କହିଲା, କପରି କଣ, ସବୁଦିନ ପରି । ଏ ରୋଗ ଭଲ ହେବନାହିଁ । ଏ ଜନ-ମରେ ନୁହେଁ, କାହିଁକି ଆପଣ ଲାଗିଛନ୍ତି । କିଛି ଫଳ ହେବନି ।

ପରିଶ୍ରମ ବୃଥା । ଓଃ—ଦୋ—ପାଣି ଟୋପା ଦିଅ । ତଣ୍ଟି ଶୁଖିଗଲା ଯେ……

ବାବାଜି ଦୁଧ ଟୋପା ପାଟିରେ ଦେଇ ଦେଇ କହିଲେ—ପାଟି କରନା, ଦେହ ଅଧିକ ଖରାପ ହେବ । ବ୍ୟସ୍ତ ହୁଅନି, ଭଲ ହୋଇଯିବ ଯେ—

—ହଁ ଭଲ ହେବି, ଓଃ—ହୋ ଜୀବନଟା ଯେ ଛାଡ଼ି ପଳଉଛି । ଭଲ ହେବ ଏଠି ନୁହେଁ ! ଏ ପୁରରେ ନୁହେଁ—ସେ ପୁରରେ—ମରିଗଲି ଯେ—

—ବ୍ୟସ୍ତ ହୁଅନି ମା', ପାଟି କରନା ପରି କହୁଛି । ନିଶ୍ଚୟ ଭଲ ହୋଇଯିବ ।

—ହଁ ଭଲ ହେଇ, କେହି ପାରିବେ ନାହିଁ—କେହି ପାରିବେ ନାହିଁ—ନିଜେ ଭଗବାନ ବି ଆସିଲେ । ଟୋପା ପାଣି ଦିଅ । ବୋଉ, ବୋଉ କୁଆଡ଼େ ଗଲୁ ଲୋ ! ଶରତ ଭାଇ, ଏତିକିବେଳେ ଥରେ ଦେଖାଦିଅ ଭଲା । ଶାନ୍ତିରେ ଟିକିଏ ମରେ । ବାବାଜି ଅବାକାବା ହୋଇଗଲେ ! ରୋଗୀର ମୁହଁଟାକୁ ଭଲ କରି ଚାହିଁ—କେଉଁ ଶରତ ଭାଇ ! କାହା କଥା କହୁଛି, ତାଙ୍କ କଥା ନୁହେଁ ତ !

—ବାବାଜି ବଡ଼ ବିସ୍ମିତ ହୋଇପଡ଼ି କହିଲେ—ଗୋଟିଏ କଥା ପଚାରିବି, ତୁମ ମନକଥା ମୋତେ କୁହ ଯଦି ପାରେ—ଚେଷ୍ଟା କରିବି ।

ରୋଗୀ ଟିକିଏ ନିରାଶା ହସ ହସି କହିଲା—ନା, ପାରିବ ନାହିଁ, ପାରିବ ନାହିଁ । ମୋ ଶରତ ଭାଇକୁ ମତେ ଦେଇପାରିବ ନାହିଁ । ଦିଅ ଆଉ ଟୋପା ପାଣି । ତଣ୍ଟିଟା ମୋ ଶୁଖି ଧୂଳି ହୋଇ ଯାଉଛି ।—ଓଃ—ହୋ ମରିଗଲି, ମରିଗଲି, ଶରତ ଭାଇ, ଶରତ ଭାଇ !

—ଶରତ କିଏ !

—କହିବି, ନ କହିଲେ ଯେ ଜୀବନଟା ଯିବ ନାହିଁ, ଶାନ୍ତିରେ ମରିବି ନାହିଁ । ଶୁଣ, ମୋର ଜୀବନ ପ୍ରଦୀପଟା ଯେ ଲିଭି ଆସୁଛି, ଆଉ ବେଶି ସମୟ ନୁହେଁ । ହଁ ଟୋପେ ପାଣି ଦିଅ ପିଇଦିଏ । କହୁଥିଲି ପରା, ଆମ ଘର ଚଣ୍ଡୀଦାଠ । ଶରତ ଭାଇ ଆମ ଠାର । ପିଲା ଦିନର ସାଙ୍ଗ ଆମେ । ସେ ମୋତେ ଭାରି ଭଲ ପାନ୍ତି, ମୁଁ ତାଙ୍କୁ ଭାରି ଭଲପାଏ । ନା, ଆଉ କହିପାରିବି ନାହିଁ ।

ରୋଗୀଠାରୁ ଏକଥା ଶୁଣୁ ଶୁଣୁ ବାବାଜୀଙ୍କର ଦେହଟା ସେତେ-ବେଳକୁ ବରଡ଼ାପତ୍ରର ପରି ଥରିଲାଣି—ସେ ନିଜକୁ ଭୁଲି ଖନଖନ ହୋଇ କହିବାକୁ ଲାଗିଲେ—ହଁ ତା’ ଘର ଚଣ୍ଡୀଦାଠ, ତୁମ ନାଁ ନିରୁ, ତୁମେ ଦୁହେଁ ଛଳି ଅଙ୍କ ନୁହେଁ ?

—ଓ ହୋ ମନେପଡ଼ିଲା । କେମିତି ଜାଣିଲେ—ଜୀବନରେ କେତେଥର ଆମେ ଭାବିଥିଲୁ । କିନ୍ତୁ—ହୋଇ ପାରିଲା ନାହିଁ । ଶରତ ଭାଇ—ଶରତ ଭାଇ, ଆସ ଥରେ ଦେଖା ଦିଅ । ମୁଁ ଶାନ୍ତିରେ ମରିବି ଯେ । ହଁ, ଶରତ ଭାଇ ସେହି ଦିନଠୁ କୁଆଡ଼େ ଗଲେ, ତାଙ୍କ ଦାଦା କ ଚିଠି ଲେଖିଲେ କେଜାଣି ସେ ଆଉ ଫେରିଲେ ନାହିଁ । ମତେ ଭୁଲିଗଲେ—ଚିଠି ବି ଦେଲେ ନାହିଁ । ତା’ପରେ ଓ ହୋ ଆଉ ବେଶି ସମୟ ନୁହେଁ—ବୋଉକୁ ଟିକିଏ ମୋ ପାଖକୁ ଡାକି ଦିଅ ! ଦେଖ ତ ମୋ ବାପା ହାତ ବଢ଼ାଇ ମତେ ଡାକିଲେଣି ତାଙ୍କ ପାଖକୁ ଯିବାକୁ । ସେ ମଲେ ସେହି ଚନ୍ଦ୍ରାରେ । ମୁଁ ମରିବି ସେହି ଚନ୍ଦ୍ରାରେ ।

ବାବାଜିଙ୍କର ଆଉ ବୁଝିବାରେ କିଛି ନ ଥିଲା । ଆଖି ବାଟେ ଲୁହ ସେତେବେଳକୁ ଖୁବ୍ ଜୋରରେ ଛୁଟିଲାଣି । । ନିରୁର ମୁଣ୍ଡଟିକୁ ନିଜ କୋଳ ଉପରେ ରଖି ଖନ ଖନ ସ୍ୱରରେ କହିଲେ—ତା’ପରେ

ସେ ଶଠି ଦେଲନାହିଁ, କୁଠିଁ ଭୀ୨ କଷ୍ଟୁର ସେ । ଦାଦୀ ଖୁଡ଼ୀ ତାକୁ ଜଳାଇ ପୋଡ଼ାଇ ମାରିଲେ ସମ୍ପତ୍ତି ପାଇଁ ।

—ନା, ମୋ ସଙ୍ଗରେ ଆଉ ଲଗାନା । ମୁଁ ଆଉ ଗପି ପାରିବି ନାହିଁ ଯେ । ଦେହ ମୋର କଣ ହୋଇ ଯାଉଛି । ତୁମ ହାତ ଧରୁଛି ଦିଅ ଭଲ ଚୋପା ପାଣି । ଗଲା ଆସିଲା ବେଳେ କାହିଁକି କଲବଲ କରୁଛ ଭଲ---ଓ ହୋ ତଣ୍ଟି ଶୁଖିଗଲା । ବୋଉ, ବୋଉ ମ, ଶରତ ଭାଇକୁ ଡାକିଲୁନୁ । ତୁ ବି ବାଦ ସାଧିଲୁ---ମରିଗଲି, ପାଣି—ପା—ଆ—ଣି । ଓ ହୋ ।

ନିରୁବୋଉଙ୍କ ଆଖିରେ ସେତେବେଳକୁ ଲୁହ ନ ଥିଲା, ପାଟିରେ ଭାଷା ନ ଥିଲା । କେବଳ ଥିଲା ଗୋଟିଏ କରୁଣ ଚାହାଣୀ ।

ବାବାଜି ଆଉ ସମ୍ଭାଳି ପାରିଲେ ନାହିଁ । ଆଖିରୁ ଲୁହ ଧାର ଧାର ହୋଇ ବହି ଯାଉଥାଏ । କୋହକୁ ଚାପି ଧରି ଥର ଥର ଓଠରେ ଟିକିଏ ଜୋରରେ ରୋଗୀକୁ ହଲାଇ ଡାକିଲେ, ନିରୁ, ନିରୁ, ମୋ ପ୍ରାଣର ନିରୁ, ଆଖି ଖୋଲି ଦେଖ, ତୁ ତୋ ଶରତ ଭାଇ କୋଡ଼ରେ ! ଛାତିରେ ଚାପି ଧରିବାକୁ ଯାଉଥିଲେ, କିନ୍ତୁ ପାରିଲେ ନାହିଁ । କୋଡ଼ ଉପରେ ରଖି ଲୁହଭରା ଆଖିରେ ଅନ୍ତରର ସବୁ ସ୍ନେହଭରି ସେହି ମଉଳା ଅଧରରେ ଗୋଟିଏ ଚୁମ୍ବନ ଦେଲେ ।

ନିରୁର ପାଟି ବନ୍ଦ ହେଲା । ଗୋଟାଏ ହୋଇ ଆସିଲା କି କଣ, ଭଲକରି ଥରେ ବାବାଜିଙ୍କର ମୁହଁକୁ ଚାହିଁଲା । ସବୁ ସନ୍ଦେହ ଦୂର ହେଲା ବୋଧହୁଏ । ତା' ପରେ—ଅଧରରେ ଦେଖାଗଲା ଗୋଟିଏ କରୁଣ ହସ, ଆଖିରେ ଫୁଟି ଉଠିଲା—ମିଳନଭରା ହତାଶର କରୁଣ ଚାହାଣୀ । ଇମ୍ପିତ କେତେବେଳ କଟିଲା, କାହାର ପାଟିରେ ଭାଷା ନାହିଁ । ଆଖି ଆଗରେ ଅତୀତ ଜୀବନର କଥାବାର୍ତ୍ତା । ତା'ପରେ ନିରୁ

ଦେହର ସବୁ ବଳ ସଂଗ୍ରହ କରି ବଡ଼ କଷ୍ଟରେ ଥର ଥର ସ୍ୱରରେ କହିଲା—ଶରତ ଭାଇ ତୁମେ ଅସିଛ, ନା······ ।

ରାତି ଶେଷ ପହର । କାଳି ଜହ୍ନ ପଡ଼ିଥାଏ । ଦଣ୍ଡେ ପହରକରେ ନିରୁକୁ ଦେଖିଯିବା ପାଇଁ ଜହ୍ନଟା ଝରକା ବାଟେ ଉଙ୍କି ମାରି କ'ଣ ଭାବି ଦେଖଜାଣି କୁଆଡେ ପଳାଇ ଯାଉଥାଏ । ଲକ୍ଷେ ଜୁଳୁଜୁଳିଆ ପୋକ ରଜନୀବାଳା' ଶାଢ଼ୀରୁ କ'ଣ ହଜାଇ ଆଲୁଅ ଜାଳି ଖୋଜୁ-ଥାନ୍ତି । ପବନଟା ମନ ଦୁଃଖରେ କେଉଁ ଗଛ ଗହଳରେ ନିଘଡ଼ ନିଦରେ ଶୋଇ ପଡ଼ିଥାଏ । ଗଛ ଗୁଡ଼ାକ କେଉଁଠି କଣ ଘଟିଲା ପରି ସଶଙ୍କିତ ହୋଇ ଠିଆ ହୋଇଥାନ୍ତି । ପାଖ ଦେବଦାରୁ ଗଛଟାରେ ପେଚାଟା ଦ'ଥର ବୋବାଇ କୁଆଡ଼େ ଉଡ଼ିଗଲା । ଖଣ୍ଡଗିରିର କେଉଁ ପାହାଡ଼ କନ୍ଦରୁ ଭେରଣ୍ଡାଟା ବୋବାଇ ବୋବାଇ କୁଆଡ଼େ ଚାଲିଗଲା । ଚାରିଆଡ଼େ ଭାରି ମାଡ଼ ମାଡ଼ ପଡୁଥାଏ । ଚାଳଘରେ ଗୋଟିଏ କଣରେ ଦୀପଟି ଜଳୁଥାଏ ଢକ୍ ଢକ୍ ହୋଇ ।

କେତେବେଳକେ ବାବାଜୀଙ୍କର ଚେତା ଆସିଲା । ନିରୁର ମୁହଁକୁ ଭଲକରି ଅନାଇଁଲେ—ଅଧରରେ ସେହି କରୁଣ ହସର ରେଖା । ଆଖିରୁ ଦ'ଧାର ଲୁହ ଗଡ଼ି ଶୁଖି ଗଲାଣି । ବାବାଜୀ ତାର ଅଲରା ବାଳ ଗୁଡ଼ିକୁ ସଜାଡ଼ି ଦେଇ ଦେଇ ହଲାଇ ପକାଇ ଡାକିଲେ—ନିରୁ, ନିରୁ, ପାଣି ଦେବି, ତୁ ଭଲ ହୋଇଯିବୁ ଯେ—

କିଏ ଜାଣେ ନିରୁ ଯାଇ ସେ ପଥର କେତେ ଦୂରରେ !

✹ ଶେଷ ✹

---

ମୁଦ୍ରାକର ଶ୍ରୀ ଚନ୍ଦ୍ରମଣି ଦାସ, ପ୍ରଗତି ପ୍ରେସ୍ ୧୯୫୩

ପ୍ରଗତି-ସାହିତ୍ୟ-ମନ୍ଦିରର ପ୍ରକାଶିତ

# ନୂଆ ଉପନ୍ୟାସ



| | |
|---|---|
| ଜନ୍ମ-ଜନ୍ମାନ୍ତରେ | ଟ ୨୲ |
| ରାଜକୁମାରୀ | ଟ ୧୳ |
| ଘର ସଂସାର | ଟ ୧୳ |
| ଯମଦୂତ | ଟ ୨୲ |
| ପ୍ରଭାବତୀର ପରେ | ଟ ୧। |
| ପୂର୍ଣ୍ଣଚ୍ଛେଦ | ଟ ୧୳ |
| ଉଦ୍ୟୁରାଗ | ଟ ୧୳ |
| ରାଧାନାଥର ସ୍ତ୍ରୀ | ଟ ୧। |
| ମାୟାବୀ ଦସ୍ୟୁ | ଟ ୧୴ |
| ବିପ୍ଳବୀ ଦ୍ୱିବେଦୀ | ଟ ୧। |
| କଳଙ୍କିନୀ | ଟ ୧। |
| ଚକ୍ରବ୍ୟୂହ | ଟ ୧୴ |

ଆପଣ ପାଠାଗାରର ଶ୍ରୀବୃଦ୍ଧି ପାଇଁ
ବହି ଗୁଡ଼ିକ କିଣି [illegible]ନ୍ତୁ ।

ନଟର

ପ୍ରଗତି ପ୍ରେସ୍ — ୧୯୫୬
ଦେ